—ପ୍ରକାଶ କରିଛନ୍ତି—

ଗ୍ରାମସେବକ ସମବାୟ ପ୍ରକାଶନ ଲି:

ବାଖରବାଦ, କଟକ-୨

—ଛାପିଛନ୍ତି—

ଶ୍ରୀ ଅଦ୍ୱୈତ ଚରଣ ଦାସ

ଗ୍ରାମସେବକ ସମବାୟ ପ୍ରେସ,

ବାଖରବାଦ, କଟକ-୨

ପ୍ରଥମ ମୁଦ୍ରଣ— ଡିସେମ୍ବର ୧୯୬୩, ସଂଖ୍ୟା—୩୦୦୦

୨ୟ ପରିବର୍ଦ୍ଧିତ ମୁଦ୍ରଣ—ମଇ ୧୯୬୭, ସଂଖ୍ୟା—୨୦୦୦

ମୂଲ୍ୟ—ଏକଟଙ୍କା ପଚିଶି ପଇସା ମାତ୍ର

# ଦୁଇପଦ

ଆଜିର ଦୁନିଆରେ ଦେଶଭିତରେ ସଂଘର୍ଷ—ଜାତି ଜାତି ଭିତରେ ଟଣାଟଣି । ଏହିସବୁ ସଂଘର୍ଷ ଓ ସଂଗ୍ରାମ ଭିତରେ ଦୁନିଆର ତଥା କଥିତ ଚାଳକମାନେ ଭୁଲି ଯାଉଛନ୍ତି, ସେହି 'ମଣିଷଟିକୁ ଯାହା ପାଇଁ ଏତେକଥା । କଥା ଯାଇ ଏଠି ପହଞ୍ଚିଲାଣି ଯେ ଶେଷକୁ ଯେମିତି କି ଖାଲି ଦେଶଟା ଥିବ, ଖାଲି ଜାତିଟା ଥିବ, ଅଥଚ 'ମଣିଷ' ନ ଥିବ—ମଣିଷ ଶୂନ୍ୟ ଦୁନିଆରେ ସତେ ଅବା ଜାତିଟା ଯେମିତି ବିଚରଣ କରିବ ।

ଠିକ୍ ଏତିକିବେଳେ ଯୁଗ ପୁରୁଷ ବିନୋବା ଗାନ୍ଧୀଜୀଙ୍କର କଳ୍ପନାକୁ ଆଗେଇ ନେଇ କହୁଛନ୍ତି, "ଗ୍ରାମସ୍ୱରାଜ୍ୟ ଗଢ଼ ଓ ବିଶ୍ୱରାଷ୍ଟ୍ର ପ୍ରତିଷ୍ଠା କର । ତେବେ ମଣିଷ ତିଷ୍ଠିବ ଓ ବିଶ୍ୱରେ ଶାନ୍ତି ବିରାଜିବ ।" ଏହାର ଏକ ସୁନ୍ଦର ଚିତ୍ର ଏହି କ୍ଷୁଦ୍ର ବହି ଖଣ୍ଡିକରେ ଅଛି । ପଞ୍ଚାୟତରାଜର ପ୍ରତ୍ୟେକ କର୍ମକର୍ତ୍ତାଙ୍କ ପାଇଁ ଏହା ଏକ ପଥପ୍ରଦର୍ଶକର କାମ କରିବ ।

—ପ୍ରକାଶକ

ସାପ୍ତାହିକ

'ଗ୍ରାମସେବକ'ର ଗ୍ରାହକ ହୁଅନ୍ତୁ

ଏଥିରେ ଭୂଦାନ, ଗ୍ରାମଦାନ ତଥା ଅନ୍ୟାନ୍ୟ ବହୁ ଶିକ୍ଷଣୀୟ ବିଷୟରେ ଲେଖା ପ୍ରକାଶିତ ହୁଏ ।

ବାର୍ଷିକ ମୂଲ୍ୟ--ପାଞ୍ଚଟଙ୍କା ମାତ୍ର

## ଦେଶର ଯୋଜନା ଗ୍ରାମଦାନଦ୍ୱାରା ସଫଳ ହେବ

### ଗ୍ରାମଦାନ ହେଉଛି ବିକାଶ ଓ ପ୍ରତିରକ୍ଷାର ସଂଗମ—

ଆମେ ଜନତାର ସେବକ ଏବଂ ଆପଣମାନେ ମଧ୍ୟ ଜନତାର ସେବକ । ଆମେ ଯଦି ଅଳସୁଆ ଭାବରେ ସେବା କାମ କରୁ, ତାହାହେଲେ କେହି ଆମକୁ ନିନ୍ଦା କରିବେ ନାହିଁ । ଯଦି ଭଲକାମ କରୁ, ତେବେ ଲୋକଙ୍କଠାରୁ ଆମେ ପ୍ରଶଂସା ପାଇବୁ । ଆପଣମାନେ କିନ୍ତୁ ଭଲକାମ କଲେ ପ୍ରଶଂସା ପାଇବେ ନାହିଁ । ଖରାପ କାମ କଲେ ଲୋକେ ଆପଣଙ୍କୁ ନିନ୍ଦା କରିବେ । ସାଧାରଣ ନାଗରିକ ତ ବେଶ୍ ଆରାମରେ ଥାଏ । ମାତ୍ର ଆପଣ ଓ ଆମେ ଯେଉଁମାନେ କି ସେବାକରୁ—ଆମ ଭିତରେ ପାର୍ଥକ୍ୟ ହେଉଛି ଯେ ଆପଣମାନେ ଲୋକଙ୍କର ସେବା କରିବା ଲାଗି ନିଯୁକ୍ତ ହୋଇଛନ୍ତି, କିନ୍ତୁ ଆମେ ଏ କାମ ପାଇଁ ବାଧ୍ୟ ନୋହୁ ।

ଦେଶ ଭିତରେ ଦୁଇ ପ୍ରକାରର କାମ ଅଛି । ବିକାଶ ବା ଉନ୍ନୟନ ଏବଂ ପ୍ରତିରକ୍ଷା । ଗ୍ରାମଦାନରେ ଏ ଦୁଇଟିଯାକ କାମ ଏକତ୍ର ହୋଇଛି । ଏଣୁ ଏ କାମକୁ ବୁଝାଇବାର ଦାୟିତ୍ୱ ହେଉଛି ଆପଣମାନଙ୍କର । ବିକାଶ ଏବଂ ନିର୍ମାଣ ଏ ଦୁଇଟିଯାକ କାମ ଲାଗି ଗାଁଟିଯାକ ଏକ ହେବା ଦରକାର । ଲୋକଙ୍କର ସ୍ୱେଚ୍ଛାକୃତ ତ୍ୟାଗ ଏବଂ ଉଦ୍ୟମ ତଥା ଦାନ ଏବଂ କରୁଣାଦ୍ୱାରା ଏହି ଏକୀକରଣ

ସୃଷ୍ଟି ହେବା ଉଚିତ । ଗ୍ରାମର ବିକାଶ, ଗ୍ରାମର ନିର୍ମାଣ, ଗାଁର କଳିକଜିଆ ଗାଁରେ ମେଣ୍ଟାଇବା—ଏ ସବୁ କଥା ପାଇଁ ଦେଶବ୍ୟାପୀ ଏକ ବଡ଼ ଆନ୍ଦୋଳନ ଗ୍ରାମଦାନ ଦ୍ୱାରା ଗାଁଏ ଗାଁଏ ହେଲେ ଦେଶର ପ୍ରତିରକ୍ଷା ପାଇଁ ଶକ୍ତି ବଢ଼ିବ । ତ୍ରିବେଣୀରେ ଯେପରି ଗଙ୍ଗା ଏବଂ ଯମୁନାର ସଙ୍ଗମ ହୋଇଛି, ସେହିପରି ଗ୍ରାମଦାନ ଆନ୍ଦୋଳନରେ ବିକାଶ ଏବଂ ପ୍ରତିରକ୍ଷା—ଏ ଉଭୟ ଯୋଜନାର ସଂଗମ ଘଟିଛି । ଏଭଳି ସଂଗମରେ ଆପଣମାନଙ୍କୁ ସ୍ନାନ କରିବାକୁ ପଡ଼ିବ । ଏ କଥା ଯେ ବୁଝିବାଲାଗି ଆପଣମାନେ ଏଠି ଏକତ୍ରିତ ହୋଇଛନ୍ତି, ସେଥିପାଇଁ ମୁଁ ଆପଣମାନଙ୍କୁ ଧନ୍ୟବାଦ ଜଣାଉଛି ।

## ଦଳମୁକ୍ତ ସରକାରୀ କର୍ମଚାରୀଙ୍କ କର୍ତ୍ତବ୍ୟ କଣ ?—

ସେବା କରିବାଲାଗି ଆପଣମାନେ ସରକାରଙ୍କଠାରୁ ଆଦେଶ ପାଇଛନ୍ତି । ସେହିପରି ମୋତେ ଏ କାମପାଇଁ ମୋର ଅନ୍ତରାତ୍ମା ନିର୍ଦ୍ଦେଶ ଦେଉଛି । ଯେଉଁମାନେ ଦେଶଭକ୍ତି ଉନ୍ନୟନ ଯୋଜନାରେ ବିଭିନ୍ନ ସରକାରୀ ଅଫିସରେ, କୋର୍ଟକଚେରୀରେ, ସେନା ବାହିନୀରେ, ଡାକ୍ତରଖାନାରେ କିମ୍ବା ନିରପେକ୍ଷ ଭାବରେ କାମ କରନ୍ତି, ଅର୍ଥାତ୍ ଲୋକସେବା ପାଇଁ ନିଯୁକ୍ତ ଅଛନ୍ତି—ସେମାନଙ୍କୁ ନିର୍ଦ୍ଦେଶ ଥାଏ ଯେ, ସେମାନେ ଦଳମୁକ୍ତ ଏବଂ ପକ୍ଷମୁକ୍ତ ଭାବରେ ଲୋକଙ୍କର ସେବା କରିବେ । ଏ ଦେଶର ସମସ୍ତ ଲୋକ ଭାରତୀୟ—ଏହାକୁ ଛଡ଼ା ଅନ୍ୟ କୌଣସି ଦୃଷ୍ଟିକୋଣ ସେମାନଙ୍କର ରହିବ ନାହିଁ ।

ମନେକରନ୍ତୁ ଡାକ୍ତରଖାନାକୁ ଗୋଟିଏ ରୋଗୀ ଆସିଲା । ଯଦି ସେଠାରେ କାମ କରୁଥିବା ଡାକ୍ତର, ନର୍ସ ଏବଂ ଅନ୍ୟାନ୍ୟ କର୍ମଚାରୀମାନେ ବିଚାର କରିବେ ଯେ ଏ କେଉଁ ଧର୍ମ ବା କେଉଁ

ଭିତର ଲୋକ କିମ୍ବା କୌଣସି ରାଜନୈତିକ ଦଳର କର୍ମୀ—ତାହାହେଲେ ବିଚାର ରୋଗୀର ଅବସ୍ଥା କ'ଣ ହେବ ? ଏଣୁ ସବୁ ଲୋକଙ୍କୁ ଦଳମତର ବାଛବିଚାର ନ ରଖି, ରୋଗ ଚିହ୍ନି ସେବା କରିବା ହେଲା ହାସ୍ପାତାଳର ନିୟମ ।

ମୁଁ ମଧ୍ୟ କହୁଛି ଯେ, ସର୍ବୋଦୟ ସମାଜ ଦଳମୁକ୍ତ, ସମ୍ପ୍ରଦାୟମୁକ୍ତ ହେବା ଆବଶ୍ୟକ ।

ତେଣୁ ଲୋକେ ମୋତେ ପଚାରନ୍ତି—ଏପରି ସମାଜ କେବେ ସ୍ଥାପିତ ହେବ ?

ମୁଁ ସେମାନଙ୍କୁ ଜବାବ ଦିଏ—ଏପରି ସମାଜର ସ୍ଥାପନା ହୋଇ ସାରିଛି ।

ମୋ ସାମନାରେ ଏଠି ଯେତେ ଲୋକ ବସିଛନ୍ତି, ସେମାନେ ସମସ୍ତେ ଦଳମୁକ୍ତ ଏବଂ ପକ୍ଷମୁକ୍ତ ଲୋକ । ଏହାର ଅର୍ଥ ହେଉଛି ଯେ, ଏମାନେ ସରକାରଙ୍କଠାରୁ ଦରମା ନେଉଛନ୍ତି । କିନ୍ତୁ କାମ କରୁଛନ୍ତି ବଡ଼ୋଦାର । ସରକାର ଏବଂ ବଡ଼ୋଦା ଭିତରେ କାମର ଭାଗ ବଣ୍ଟା ହୋଇଛି—କାମ ହେବ ବଡ଼ୋଦାର ଆଉ ଦରମା ସରକାର ଅଡ଼ୁ ଆସିବ । ସେଇଥିପାଇଁ ଆଜି ଆପଣମାନେ ମୋ କଥା ଶୁଣିବାକୁ ଆସିଛନ୍ତି । ତା' ନ ହେଲେ ଯଦି କୌଣସି ରାଜନୈତିକ ଦଳର ନେତା ଏଠାକୁ ଆସିଥାଆନ୍ତେ, କ'ଣ ଆପଣମାନେ ତାଙ୍କ କଥା ଶୁଣିବାକୁ ଆସିଥାଆନ୍ତେ ? କଦାପି ନୁହେଁ । ସରକାର ଆପଣମାନଙ୍କୁ ଏଥିଲାଗି ଛାଡ଼ ନ ଥାନ୍ତେ । ମାତ୍ର ମୋ ପାଖକୁ ଛାଡ଼ିଛନ୍ତି । ଏହାର କାରଣ ହେଉଛି ଆପଣ ଓ ମୋ ଭିତରେ ଧାର୍ମିକ ସମ୍ପର୍କ ରହିଛି ।

ଆପଣଙ୍କୁ ଏବଂ ଆମକୁ ଲୋକଙ୍କଠାରୁ ହିଁ ପୋଷଣ ମିଳିଥାଏ । ମାତ୍ର ପାର୍ଥକ୍ୟ ହେଉଛି ଯେ, ଆପଣମାନଙ୍କୁ ଲୋକେ ସରକାରଙ୍କ

ଅନ୍ଧାରରେ ଘୋଷିଥାଆନ୍ତି । କିନ୍ତୁ ଆମକୁ ସିଧାସଳଖ ଖୋରାକ ଯୋଗାନ୍ତି । ଏହିରୂପେ ଦେଖିବାକୁ ଗଲେ ଆପଣ ଏବଂ ଆମେ— ଉଭୟେ ଲୋକାଶ୍ରିତ ବା ଲୋକଙ୍କ ଉପରେ ନିର୍ଭର କରୁ । ଲୋକଙ୍କର ସେବକ ମଧ୍ୟ । ପୁଣି ଉଭୟେ ଆମେ ପକ୍ଷମୁକ୍ତ ଭାବରେ ସେବା କରିବାପାଇଁ ବନ୍ଧା । ଗ୍ରାମଦାନ କାମରେ ବିକାଶ ଏବଂ ପ୍ରତିରକ୍ଷା ଉଭୟର ସମନ୍ୱୟ ହେଉଥିବାରୁ ଏପରି ଅବସ୍ଥାରେ ଆପଣମାନଙ୍କ ଉପରକୁ ବଡ଼ ଦାୟିତ୍ୱ ଆସୁଛି ।

ଅନେକ କହନ୍ତି ଯେ, ବିନୋବା ଭୂଦାନ ଗ୍ରାମଦାନ କାମରେ ଅସଫଳ ହୋଇଛି । କିନ୍ତୁ ବୁଝିରଖିବା ଉଚିତ ଯେ, ମୋର ବିଫଳତା ହେଉଛି ଆପଣମାନଙ୍କର ଅଧିକ ବିଫଳତା ଏବଂ ମୋର ସଫଳତା ହେଉଛି ଆପଣମାନଙ୍କର ଅଧିକ ସଫଳତା । ମୁଁ ଆଜି ଏ କାମରେ ଲାଗିଛି ବୋଲି ମୋତେ ଗୌରବ ମିଳୁଛି । ଯଦି ଏଥିରେ ଆପଣମାନେ ସହଯୋଗ ନ କରିବେ, ତାହାହେଲେ ଆପଣମାନଙ୍କୁ ଏଥିର ଗୌରବ ମିଳିବ ନାହିଁ । ଶିବାଜୀ ରଣକ୍ଷେତ୍ରରେ ସଫଳ ହେଲେ; ଏଣୁ ଜୀବନରେ ସିଏ ସଫଳ ହେଲେ ବୋଲି କୁହାଯାଏ ଏବଂ ଝାନ୍‌ସୀର ରାଣୀ ରଣକ୍ଷେତ୍ରରେ ବିଫଳ ହେଲେ, ତଥାପି ସିଏ ଜୀବନରେ ସଫଳ ହୋଇଯାଇଛନ୍ତି ।—ଏ ଉଭୟ ସ୍ଥିତିରେ ମୁଁ ରହିଛି । ମୋର ତ ବିଫଳତା ବୋଲି କିଛି ନାହିଁ । କିନ୍ତୁ ଆପଣ-ମାନଙ୍କର ସଫଳତା ଆପଣମାନଙ୍କ କାମ ଉପରେ ନିର୍ଭର କରେ ।

## ଗ୍ରାମପଞ୍ଚାୟତକୁ ରାଜନୀତିରୁ ମୁକ୍ତ କର—

ଆଜି ଗୋଷ୍ଠୀ ଉନ୍ନୟନ ପାଇଁ ଦେଶବ୍ୟାପୀ ଉଦ୍ୟମ ଚାଲିଛି । ମାତ୍ର ଉନ୍ନୟନ କାମ ସେତିକିବେଳେ ହେବା ସମ୍ଭବ ହେବ, ଯେତେବେଳେ ଗାଁ ଗାଁର ଲୋକେ ଏଥିରେ ସହଯୋଗ

କରିବେ । କିନ୍ତୁ ଆଜି କ'ଣ ହେଉଛି ? ଗ୍ରାମପଞ୍ଚାୟତମାନେ ବିକାଶ ଯୋଜନାର କାମ କରୁଛନ୍ତି । ଦୁଇ ଚାରିଖଣ୍ଡ ଗାଁର ମିଶାଣିର ପ୍ରତିନିଧି ପଞ୍ଚାୟତରେ ଆସି ବସୁଛନ୍ତି । ସେମାନେ କେବେ ପ୍ରେମରେ ଏକ ହୋଇନାହାନ୍ତି । କେବଳ ଉପରର କ୍ଷମତା ଆସି ସେମାନଙ୍କ ହାତରେ ପଡ଼ୁଛି । ଏଣୁ ସଦ୍ଭାବର ଭାବନା ନ ଥିବାରୁ ଗ୍ରାମପଞ୍ଚାୟତରେ କେବଳ ଟଣାଟଣି ଚାଲିବାହିଁ ସାର ହେଉଛି । ପୁଣି ଏଇ ଟଣାଟଣି ଭିତରକୁ ଯଦି ରାଜନୈତିକ ଦଳମାନେ ଆସନ୍ତି, ତାହାହେଲେ ସବୁତକ କାରବାର ବିଗିଡ଼ି ଯାଏ । ଗ୍ରାମପଞ୍ଚାୟତର ଉଦ୍ଦେଶ୍ୟ ତ ମହତ୍ତ୍ୱ ମେ ଗାଁ ଗାଁରେ ଲୋକଙ୍କର ଶକ୍ତି ବଢ଼ୁ । କିନ୍ତୁ ବାସ୍ତବରେ ସ୍ୱରାଜଶକ୍ତି ବଢ଼ିବା ବଦଳରେ ଏହାଯୋଗୁଁ ଲୋକଙ୍କ ଭିତରେ ଝଗଡ଼ା ଶକ୍ତିହିଁ ବଢ଼ୁଛି । ଦିଲ୍ଲୀ, ଭୁବନେଶ୍ୱରରେ ଝଗଡ଼ା ଅବଶ୍ୟ ଚାଲୁଛି । ସେଠାରେ ସିନା ଏକଥା ଚଳିଯିବ; କିନ୍ତୁ ଗାଁ ଗାଁରେ ଏ ଝଗଡ଼ାର ବାଡ଼ କ'ଣ ଲୋକଙ୍କୁ ରଖେଇ ଥୋଇଦେବ ?

ଏବେ ପଣ୍ଡିତ ନେହେରୁଙ୍କ ହାତକୁ ଅନେକ ମନ୍ତ୍ରୀଙ୍କର ଇସ୍ତଫାପତ୍ର ଆସିଛି । କାରଣ ବଡ଼ ବଡ଼ କଂଗ୍ରେସ ନେତାଙ୍କ ଭିତରୁ ଅନେକେ ସଂଗଠନ କାମପାଇଁ ଆସିବାର ଆବଶ୍ୟକତା ଉପଲବ୍ଧି କରୁଯାଉଛନ୍ତି । କାଳେ କାହାର ଇଚ୍ଛା ନ ଥିବ, ସରକାରର ବାହାରକୁ ଯିବାପାଇଁ ବା ଯଦି କେନ୍ଦ୍ର ସରକାରରୁ ନ ଗଲେ ଭଲ ହେବ—ଏ କଥାର ନିଷ୍ପତ୍ତି ଗ୍ରହଣ କରିବାପାଇଁ ପଣ୍ଡିତ ନେହେରୁଙ୍କ ପରି ଜଣେ ପୁରୁଣା ନେତାଙ୍କୁ ଦାୟିତ୍ୱ ଦିଆଯାଇଅଛି । ଏହାଦ୍ୱାରା ଝଗଡ଼ାର ନିଷ୍ପତ୍ତି ହେବ । ସେହିପରି ଗ୍ରାମପଞ୍ଚାୟତରେ ଯଦି କୌଣସି ଅଡ଼ୁଆର ସମାଧାନ ସର୍ବସମ୍ମତିରେ ହୋଇପାରିବ ନାହିଁ, ତାହାହେଲେ ଗାଁର କୌଣସି ବୟୋବୃଦ୍ଧ ବା ବିଶ୍ୱାସବାନ୍ ଲୋକଙ୍କର ନିଷ୍ପତ୍ତିକୁ ମାନିନେବା ଉଚିତ । ଗୁଜୁରାଟୀ ଭାଷାରେ ପଞ୍ଚାୟତ ଶବ୍ଦର

ଅର୍ଥ ହେଉଛି ସ୍ୱଚ୍ଛତା । ଆଜିର କାରବାର ଯାହା ଚାଲୁଛି, ସେଥିରେ ଏଭଳି ଅର୍ଥ ସବୁ ହାତ ଛଡ଼ା ଭାଷାକୁ ବାହାରିଯିବ । ଗାଁର ମୂଳଦୁଆ ନ ଥିଲେ ଗ୍ରାମପଞ୍ଚାୟତର ମୂଳଦୁଆ ଦୃଢ଼ ହୋଇପାରିବ ନାହିଁ । ଗାଁ ଗାଁରେ ଆଜି ନାନାପ୍ରକାର ଭେଦ ରହିଛି । ଏ ସବୁ ଭେଦ ସିନା ବଡ଼ ବଡ଼ ସହରରେ ହଜମ ହୋଇପାରେ । କିନ୍ତୁ ଓଡ଼ିଶା ପ୍ରଦେଶର ଛୋଟ ଛୋଟ ଗାଁରେ ଏହା ହଜମ ହୋଇପାରିବ କେମିତି ?

ଭାଗବତରେ ଅଛି ଯେ, ଗୋକୁଳ ବୃନ୍ଦାବନରେ ଥରେ ନିଆଁ ଲାଗିଥିଲା ଏବଂ ନିଜେ ଭଗବାନ କୃଷ୍ଣ ସେ ସବୁ ଜଳନ୍ତା ନିଆଁକୁ ପିଇଗଲେ । ମାତ୍ର ଆମେ ଏଠି ତ ଏପରି କୌଣସି ବୀର ପୁରୁଷଙ୍କୁ ଦେଖିବାକୁ ପାଉନାହୁଁ, ଯେ କି ଗାଁ ଗାଁରେ ଲାଗିଥିବା ଏ ସବୁ ନିଆଁକୁ ପିଇଯିବେ; ବରଂ ଓଲଟା ଦେଖୁଛୁ ଯେ, ସମସ୍ତେ ନିଆଁ ଲଗାଇବା କାମରେ ବ୍ୟସ୍ତ । ଯଦି ଏହିପରି ନିଆଁ ଲଗାଇବା ଜାରି ରହେ, ତାହାହେଲେ ନିଭାଇବାକୁ ଆସିବ କିଏ ? ସେଥିଲାଗି ଗାଁ ଗାଁରେ ପ୍ରେମଶକ୍ତି ବଢ଼ାଇବାର କଥା ଆମେ କହୁଛୁ । ଭୂମିହୀନମାନଙ୍କୁ ଭୂମି ଦେବାଦ୍ୱାରା ଏ ଶକ୍ତିର ସୃଷ୍ଟି ହୋଇପାରିବ ।

ଆଜି ଗ୍ରାମପଞ୍ଚାୟତ ଭିତରକୁ ଗାଁର ସବୁ ଲୋକଙ୍କର ଆବାଜ ଯାଇପାରୁନାହିଁ । ସେଥିପାଇଁ ଗ୍ରାମଦାନ ଗାଁରେ ଯେଉଁ ଗ୍ରାମସଭା ଗଠନ କରାଯିବ, ସେଥିରେ ପ୍ରେମପୂର୍ବକ ସମ୍ମିଳିତ ନିଷ୍ପତ୍ତି ଏବଂ ସର୍ବସମ୍ମତିରେ ପ୍ରସ୍ତାବ ଗ୍ରହଣ କରାଯିବ । ଗାଁବାଲା କୌଣସି ବିଷୟରେ ଆଲୋଚନା କରିବାକୁ ଗଲାବେଳେ ଭଗବାନଙ୍କର ନାମ ସ୍ମରଣ କରି ଆଲୋଚନା ଆରମ୍ଭ କରିବେ । ସପ୍ତାହରେ ଥରେ ଦୁଇଥର କିମ୍ବା ଆବଶ୍ୟକ ହେଲେ ସେମାନେ

ଛାନାଥର ବସିବେ । ଗାଁ କଥା ର ଚିନ୍ତା କରିବେ । ଏହିରୂପେ ଗାଁ ଭିତରେ ଗୋଟିଏ ନୂତନ ଶକ୍ତିର ନିର୍ମାଣ ହେବ । ଏହି ଶକ୍ତିଦେବୀଙ୍କ ଚରଣ ତଳେ ଗାଁ ର ସମସ୍ତଙ୍କ ବ୍ୟକ୍ତିଗତ ମାଲିକାନା ଅର୍ପିତ ହେବ । ଆଜି ଏହି ମାଲିକାନା ବଳରେ ଜମି ବନ୍ଧକ ଏବଂ ବନ୍ଧକ ରଖିବାର ଅଧିକାର ଥିବାରୁ ଗ୍ରାମ ଦେଶର ଲକ୍ଷ ଲକ୍ଷ ଗାଁ ଭିତରୁ ଜମି ଗାଁ ଲୋକଙ୍କ ହାତରୁ ଅନ୍ୟଆଡ଼େ ଗୁଳିଯାଉଛି । ଯଦି ପଡ଼ୋଶୀ ଗାଁକୁ ଯାଇଥାନ୍ତା, ତାହାହେଲେ ଆମର କିଛି କହିବାର ନ ଥିଲା । କିନ୍ତୁ ପଇସା ବଳରେ ଜମି କିଣୁଥିବା ମାଲିକମାନେ ଯାଇ ବଡ଼ ବଡ଼ ସହରରେ ରହୁଛନ୍ତି । ଗାଁର ରହୁଥିବା ଲୋକଙ୍କ ହାତରେ ଜମି ନାହିଁ । ଏଣୁ ଗାଁର କୌଣସି ଯୋଜନା ହୋଇପାରୁ ନାହିଁ କି ଗ୍ରାମ ଯୋଜନାର ମୂଳଦୁଆ ସୁଦ୍ଧା ପଡ଼ି ପାରୁ ନାହିଁ । ଜମି ଉପରେ ହିଁ ଗାଁ ନିର୍ଭରଶୀଳ । ଗ୍ରାମଦାନ ଗାଁର ଗ୍ରାମସଭା ଗାଁର ସବୁରିଙ୍କ ଜମିର ଖଜଣା ସରକାର ପାଖରେ ଦେଇ ଆସିବ । ଗ୍ରାମସଭାକୁ ଖଜଣା ବ୍ୟତୀତ ଯେଉଁ କିଛି ପୁଞ୍ଜି ଗାଁ ଲୋକେ ଦାନ ଆକାରରେ ଦେବେ, ସେଥିରୁ ନାନାପ୍ରକାରର ଶିଳ୍ପଧନ୍ଦା ଗୁଳିବ । ଏଭଳି ଯୋଜନା କାର୍ଯ୍ୟକାରୀ ହେବାପାଇଁ ଗାଁର ମାଲିକ ମୂଳିଆ ଓ ସାହୁକାର ମହାଜନମାନେ ମିଶିଯିବା ଆବଶ୍ୟକ ।

ଗ୍ରାମସଭାର ସ୍ୱରୂପ—

ଗ୍ରାମସଭା ହେଲା ଏକ ବ୍ୟାଙ୍କ ପରି । ଲୋକେ ଯେପରି ନିଜର ପଇସାକୁ ସୁରକ୍ଷିତ ରଖିବା ପାଇଁ ବ୍ୟାଙ୍କରେ ଜମା କରନ୍ତି, ସେହିପରି ଋଣଦାତାମାନଙ୍କର ଋଣ ଦେଇଥିବା ଟଙ୍କା ଗ୍ରାମସଭା ପାଖରେ ସୁରକ୍ଷିତ ରହିବ । ସାହୁକାର, ମହାଜନ କିମ୍ବା ବ୍ୟବସାୟୀ କାହାର ସମ୍ମାନ ଗ୍ରାମସଭା କମାଇବ ନାହିଁ, ବରଂ ବଢ଼ାଇବ ।

ଗ୍ରାମସଭାକୁ ସେମାନେ ଋଣ ଦେବେ ଓ ଗ୍ରାମସଭା ସେମାନଙ୍କୁ ବର୍ଷେ ଦୁଇ ବର୍ଷ ପରେ ଟଙ୍କା ଫେରାଇ ଦେବ । ମାତ୍ର ଆମେ ତ ଏ କଥା ଆଶା କରିବୁ ଯେ, ମହାଜନମାନେ ଗ୍ରାମସଭାଠାରୁ ସୁଧ ଅମୂଲ କରିବେ ନାହିଁ ଏବଂ ଶହେ ଟଙ୍କା ଋଣ ଦେଲେ ବର୍ଷକୁ ବର୍ଷ ପାଞ୍ଚ ଟଙ୍କା କରି କମ୍ ନେବେ । ତାହାହେଲେ ଗ୍ରାମସଭା ସେମାନଙ୍କ ଠାରୁ ପାଞ୍ଚ ଟଙ୍କାର ଦାନ ପ୍ରାପ୍ତ କରିବ । ସେ ପାଞ୍ଚଟଙ୍କା ଖାଲି ନଗଦ ପାଞ୍ଚଟଙ୍କା ନୁହେଁ; ଶହେ ଟଙ୍କାରୁ ପାଞ୍ଚନବେ ଟଙ୍କା କମ୍, ଶହେ ବଦଳରେ ପଞ୍ଚାନବେର ଗାଣିତିକ ମୂଲ୍ୟ ସିନା ପାଞ୍ଚ । ମାତ୍ର ଉପଯୋଗିତା ତ ବହୁତ ବେଶି । ହଜାର ହଜାର ଗାଁର ଲୋକେ ସ୍ୱାଧୀନ ଭାବରେ ନିଜ ନିଜର ଉଦ୍ୟୋଗ ଧନ୍ଦା, ବଜାର, ଫସଲ ଆମଦାନୀ ବଢ଼େଇବା ଆଦିର ଯୋଜନା ତିଆରି କଲେ ସରକାରର ରୂପ ବଦଳିଯିବ । ପାଞ୍ଚ କୋଟି ବ୍ୟକ୍ତିଗତ ଭୂମି ମାଲିକଙ୍କ ବଦଳରେ ପାଞ୍ଚଲକ୍ଷ ଗ୍ରାମସଭାର ନାମ ସରକାରଙ୍କ ପାଖରେ ରହିଲେ ସରକାରଙ୍କ କାମ ମଧ୍ୟ ବହୁ ପରିମାଣରେ ହାଲୁକା ହୋଇଯିବ ଓ ଗାଁକୁ ଅଧିକା ସାହାଯ୍ୟ ଦେବାଲାଗି ସରକାର ବାଧ୍ୟ ହେବେ ।

ବିହାରରେ ଏଭଳି ସାହାଯ୍ୟ କରାଯାଇଛି । ଭୂଦାନରୁ ପାଇଥିବା ଜମିର ଉନ୍ନତି କରିବାଲାଗି ଲୋକଙ୍କୁ ସରକାରୀ ଋଣ ଦିଆ ଯାଇଥାଏ । ବ୍ୟକ୍ତିଗତ ଭାବରେ ଏ ସହାଯ୍ୟ ନେବାଦ୍ୱାରା ହୁଏତ କେଉଁଠି କେମିତି ସାହାଯ୍ୟର ଯଥାର୍ଥ ଉପଯୋଗ ନ ହୋଇପାରେ । ମାତ୍ର ଗ୍ରାମଦାନରେ ଆଉ ଏ କଥା ସମ୍ଭବ ନୁହେଁ । କାରଣ ସାହାଯ୍ୟ ଗ୍ରାମସଭାକୁ ଆସିବ ଓ ଏହାର ସଦୁପଯୋଗ ଗ୍ରାମସଭା ହିଁ କରିବ । ଏଥିରେ ସମସ୍ତେ ସହଯୋଗ ନ କରିବେ ତ ହେବ କିପରି ? ଏଣୁ ଯେଉଁମାନେ ଗାଁରେ ବଡ଼ଲୋକ,

ବେଆଗେ କିମ୍ବା ମହାଜନ ସେମାନେ ଏହାର ନେତୃତ୍ୱ ଗ୍ରହଣ କରିବା ଉଚିତ । ତେବେ ସେମାନଙ୍କର ପ୍ରତିଷ୍ଠା ସୁରକ୍ଷିତ ରହିବ ।

ଗ୍ରାମଦାନ ପ୍ରେମର ଆନ୍ଦୋଳନ—

ଗ୍ରାମଦାନ ଆନ୍ଦୋଳନ ଶ୍ରେଣୀସଂଘର୍ଷ ସୃଷ୍ଟିର ଆନ୍ଦୋଳନ ନୁହେଁ, ଶ୍ରେଣୀ ସଂଘର୍ଷ ନିରାକରଣର ବା ପ୍ରେମର ଏକ ଆନ୍ଦୋଳନ । ଗାଁରେ କଳିକଜିଆ ହେବନାହିଁ । ତଥାପି ଅନେକେ ହୁଏତ ଗ୍ରାମସଭାରେ ମିଶିବେ ନାହିଁ କିମ୍ବା ଗ୍ରାମଦାନରେ ଯୋଗ ଦେବେ ନାହିଁ । କିନ୍ତୁ ଗ୍ରାମସଭା ସେମାନଙ୍କୁ ସବୁପ୍ରକାର ନିର୍ଭୟ ପ୍ରଦାନ କରିବ । ମନେକରନ୍ତୁ କୌଣସି ଗାଁରେ ପଚଶଟି ଘର । ସେଥିରୁ ଏକୋଇଶ ଜଣ ଗ୍ରାମଦାନରେ ଯୋଗ ଦେଲେ । ବାକି ଚାରିଜଣ ଯୋଗ ଦେଲେ ନାହିଁ । ତାହାହେଲେ ସରକାରଙ୍କ ପାଖରେ ମୋଟ ପାଞ୍ଚ ଜଣଙ୍କର ନାମ ରହିବ—ଚାରିଜଣ ବ୍ୟକ୍ତିଗତ ମାଲିକ ଓ ଗୋଟିଏ ଗ୍ରାମସଭା । ଗ୍ରାମସଭା ସେମାନଙ୍କ ସହିତ ପ୍ରେମପୂର୍ବକ ବ୍ୟବହାର କରିବ । ସେମାନଙ୍କର ଜମିକୁ ଗ୍ରାମଦାନ ପୂର୍ବରୁ ଗାଁଲୋକେ ଯେପରି ଚାଷ କରୁଥିଲେ, ଗ୍ରାମସଭା ସେହିପରି ଚାଷ କରିଦେବେ । ପୂର୍ବରୁ ସେମାନଙ୍କୁ ଭାଗ ବାଦକୁ ଯେତିକି ଦିଆ ଯାଉଥିଲା, ସେତିକି ଭାଗ ମଧ୍ୟ ଦିଆଯିବ । ସେମାନେ ପୂର୍ବରୁ ଯେପରି ଚଳୁଥିଲେ, ସେହିପରି ଚଳିବାର ଅବସ୍ଥା ଗ୍ରାମସଭା ସେମାନଙ୍କୁ ଦେବ । ଏହିରୂପେ ଗ୍ରାମଦାନରୁ ବାହାରିରେ ରହିଥିବା ଚାଷୀମାନଙ୍କର ମୂର୍ତ୍ତି ରକ୍ଷା ଗ୍ରାମସଭା କରିବ । ସେମାନେ ମଧ୍ୟ ଗ୍ରାମସଭାକୁ ନିଜ ସମ୍ପତ୍ତିରୁ କିଛି କିଛି ଦାନ ଦେବେ । କାରଣ ଗ୍ରାମସଭାର ସେବା ସେମାନେ ଲାଭ କରିବେ । ଆମେ ତ ଆଶା କରିବା ଯେ ଗାଁର ପ୍ରେମଶକ୍ତି ବଢ଼ିଲେ ସେ ଜମି

ମାଲିକମାନେ ମଧ୍ୟ କ୍ରମେ ଗ୍ରାମଦାନରେ ମିଶିଯିବେ ଓ ଏହିରୂପେ ହଜାର ହଜାର ଗ୍ରାମ ନିଜକୁ ଗ୍ରାମଦାନୀ ବୋଲି ଘୋଷଣା କରିବାରେ ଗୌରବ ଅର୍ଜନ କରିବେ । ସରକାର ଯେଉଁ ଆଇନ କରି ଥାଆନ୍ତି, ସାଧାରଣତଃ ସେଥିରେ ସଂଶୋଧନ ଦାବୀମାନ କରା ଯାଇଥାଏ । ଏଣୁ ସରକାର ଗ୍ରାମଦାନ ପାଇଁ ଅନୁକୂଳ ହୋଇ ଥିଲେ ଗ୍ରାମଦାନ ପାଇଁ ସ୍ୱତନ୍ତ୍ର ଆଇନ୍ ପ୍ରଣୟନ କରିବ । ଯେଉଁ ଗାଁର ଶତକଡ଼ା ଏକାବନ ଭାଗ ଜମି ସହିତ ଗାଁର ଶହକେ ପଞ୍ଚସ୍ତରୀ ଜଣ ଲୋକ ଗ୍ରାମଦାନରେ ମିଶିଥିବେ, ତାହାହେଲେ ସେ ଗାଁକୁ ଗ୍ରାମଦାନ ଗାଁ ବୋଲି ଆଇନରେ ମାନି ନିଆଯିବ । କିନ୍ତୁ ଅବସ୍ଥା ଗୁଳିବ ଯେପରି ଗାଁର ଶତକଡ଼ା ଶହେ ଲୋକ ଏଥିରେ ଯୋଗ ଦେବେ । ଦେଶସ୍ଥ ଜନସେବକ, ଗ୍ରାମପଞ୍ଚାୟତ ଏବଂ ପଞ୍ଚାୟତ ସମିତି ଜିଲ୍ଲା ପରିଷଦର କର୍ମକର୍ତ୍ତାଗଣ ଗାଁ ଗାଁରେ ଥିବା ଶିକ୍ଷକ ଓ ଶିକ୍ଷିତ ବ୍ୟକ୍ତିମାନେ ଏଥିରେ ଜୋର ଲଗାନ୍ତୁ ।

ଗ୍ରାମଦାନରେ କଣ କଣ ହେବ ?—

ଆଗାମୀ ଚାରିମାସ ପାଇଁ ମୁଁ ଓଡ଼ିଶାରେ ରହୁଛି । ତେବେ ଗ୍ରାମଦାନର ବର୍ଷା ହେବ । ତାହାହେଲେ ନିଜେ ସରକାର ଗ୍ରାମ ପ୍ରଧାନ ଏବଂ ଗ୍ରାମ ଅଭିମୁଖୀ ହୋଇଯିବ । ଯେଉଁ ବିକାଶ ଯୋଜନା ଦେଶରେ ଚାଲିଛି, ତା'ର ବଳ ବଢ଼ିବ । ସରକାରଙ୍କ ଖର୍ଚ୍ଚର ଗୋଟାଏ ବଡ଼ ଅଂଶ ଗ୍ରାମଦାନ ଗାଁକୁ ଆସିବ ।

ସରକାର ଚାହାନ୍ତି ଯେ ତାଙ୍କର ପଇସା ଆସି ଗାଁ ଗାଁରେ କାମରେ ଲାଗୁ । ମାତ୍ର ସରକାରଠାରୁ ପଇସା ଆଣିବାର ଶକ୍ତି ଆଜି ଗାଁରେ ନାହିଁ । କାରଣ ଗାଁରେ ତ ଅଲଗା ଅଲଗା ମାଲିକ ଅଛନ୍ତି, କାହାକୁ ଭରସା କରି ସରକାର ପଇସା ଦେବ । ଏଣୁ

ସରକାର ଦେବାକୁ ସମର୍ଥ ଥିଲେବେଳେ ଗାଁ ବାଲା ଅଣିବାକୁ ସକ୍ଷମ ନାହାନ୍ତି ।

ଯଦି ଗାମଦାନ ଗାଁକୁ ସରକାର ସାହାଯ୍ୟ ଦେବେ, ସେ ସାହାଯ୍ୟର ଠିକ୍ ଉପଯୋଗ ହେବ । ଲୋକେ ନିଜ ନିଜ ଗାଁ କଥା ବୁଝିବାକୁ ଲାଗିଲେ ସରକାର ଉପରେ ଆଜି ଯେଉଁ ବୋଝ ହେଉଛି, ତାହା ହାଲୁକା ହୋଇଯିବ ଓ ସରକାର ନିଶ୍ଚିନ୍ତ ହେବ । ଏବେ ଚୀନର ସମ୍ମୁଖୀନ ହେବାର ସମୟ ଆସିଛି । ଗାଁ ଗାଁ ଲୋକେ ଏ ସବୁ କରିପାରିଲେ ସରକାର ନିଶ୍ଚିନ୍ତ ମନରେ ଏହା ସବୁ କରିପାରିବେ ।

ଗାଁ ଗାଁରେ ଯୋଜନା ହେଲେ ଗାଁ ମୂଲିଆଙ୍କର ମୂଲ ବଢ଼ିଯିବ । ଆପଣମାନେ ଜାଣନ୍ତି ଯେ ୨୫ ବର୍ଷ ପୂର୍ବେ କଲିକତା ସହରରେ ୩୦ ଲକ୍ଷ ଲୋକ ଦୁର୍ଭିକ୍ଷରେ ମଲେ । ସେମାନେ ସବୁ ଗାଁର ବାସିନ୍ଦା ଥିଲେ । ମାତ୍ର ଗାଁରେ କାମ ନ ପାଇବାରୁ ସେମାନେ ଯାଇଥିଲେ କଲିକତା । କଲିକତାରେ ଏତେ ଲୋକଙ୍କୁ ମୂଲ ମିଳିଲା ନାହିଁ । ଏଣେ ପାଖରେ ଖାଇବାକୁ ନାହିଁ । ତେଣେ ମୂଲ ଏବଂ କିଣିବାର ଶକ୍ତି ମଧ୍ୟ ନାହିଁ । ବାଧ୍ୟହୋଇ ଲୋକେ ଭୋକ ମାଡ଼ରେ ମଲେ । ସେତେବେଳେ ଦେଶରେ ଇଂରେଜମାନଙ୍କର ରାଜୁତି ଥିଲା ବୋଲି ଯାହା କିଛି ହେଉଥିଲା, ସେ ସବୁର ଦୋଷ ଇଂରେଜ ସରକାରକୁ ଆମେ ଦେଇଦେଉଥିଲୁ । ଏବେ କିନ୍ତୁ ଆମର ଶାସନ ଚାଲିଛି । ଯଦି ଏତେବେଳେ ପୁଣି ଦେଶରେ ସେହି ଘଟଣାର ପୁନରାବୃତ୍ତି ଘଟେ, ତାହାହେଲେ ଦାୟୀ କିଏ ହେବ ? ଆମେ ହିଁ ଦାୟୀ ହେବା । କାରଣ ଯେତେ ଯୋଜନା, ସରକାରୀ ସାହାଯ୍ୟ ଏବଂ ଶାସନ ଚାଲିଛି, ସେ ସବୁ ହେଉଛି ଆମର କୃତ୍ୟ ।

ଆଜ ଦିଲ୍ଲୀରେ ଯୋଜନା ପ୍ରସ୍ତୁତ ହେଉଛି । ଆଶା କରା-ଯାଉଛି ଯେ, ଗାଁମାନେ ଦିଲ୍ଲୀକୁ ସାହାଯ୍ୟ କରିବେ । ଦିଲ୍ଲୀ ସାହାଯ୍ୟ ମାଗୁଛି, ଅଥଚ ଗାଁମାନେ ବୁଝିପାରୁ ନାହାନ୍ତି । ଇଏ କଣ ହେଉଛି ? ଆଉ କେଉଁଥିରେ ସାହାଯ୍ୟ ଦେବା । ଏଣୁ ଗାଁ ମାନେ ଆଗକୁ ନିଜ ବୁଦ୍ଧିରେ ନିଜର ଯେଉଁ ଯୋଜନା ଗଢ଼ିବେ, ସରକାର ସେଥିରେ କେବଳ ପରାମର୍ଶ ଦେବେ । ସର୍ବୋଦୟବାଲା ଦରକାରବେଳେ ସାହାଯ୍ୟ ଦେବେ । ଏହିରୂପେ ବାହାରୁ କେବଳ ସାହାଯ୍ୟ ଏବଂ ପରାମର୍ଶ ଆସିବ । ଗାଁ ନିଜର ଶକ୍ତି ନିଜେ ବଢ଼ାଇବ । ତେବେ ଯାଇ ଦେଶର ଯୋଜନା ସଫଳ ହେବ । ଆପଣମାନେ ଗାଁ ଗାଁରେ ଯାଇ ଏ କଥାକୁ ବୁଝାନ୍ତୁ ।

( ମୟୂରଭଞ୍ଜର ଜିଲ୍ଲାପରିଷଦ, ପଞ୍ଚାୟତ ସମିତି, ଗ୍ରାମ-ପଞ୍ଚାୟତର କର୍ମକର୍ତ୍ତା ଓ ବ. ଡ. ଓ. ମାନଙ୍କ ସମ୍ମିଳନୀରେ ପ୍ରଦତ୍ତ ଭାଷଣ; ତା ୧୯-୮-୬୩ )

---

# ତଳେ ଗ୍ରାମପଞ୍ଚାୟତ ଓ ଉପରେ ବିଶ୍ୱରାଜ୍ୟ

## ଅନ୍ତଃଶକ୍ତିଶୂନ୍ୟ ଗଣତନ୍ତ୍ର ଆମର ଏଠି ଚାଲିଛି—

ଆପଣମାନେ ସମାଜର ଦାୟିତ୍ୱପୂର୍ଣ୍ଣ ସେବକ । ଆପଣଙ୍କ ମଧ୍ୟରୁ କେହି ବ୍ଲକରେ, କେହି ଗ୍ରାମପଞ୍ଚାୟତରେ, ପଞ୍ଚାୟତ ସମିତିରେ କିମ୍ବା ଜିଲ୍ଲାପରିଷଦରେ ଅଛନ୍ତି । କେତେକ ବିଧାନସଭାର ସଭ୍ୟ ମଧ୍ୟ ହୋଇଛନ୍ତି । ଆନନ୍ଦର କଥା ଯେ, ଆପଣମାନଙ୍କୁ କହିବାର ସୁଯୋଗ ମୋତେ ମିଳିଛି ! ଗ୍ରାମପଞ୍ଚାୟତ ସମ୍ପର୍କରେ ଆପଣମାନେ ଯାହା ପଚାରିଛନ୍ତି, ତାହାର ଅଲଗା ଅଲଗା ଉତ୍ତର ନ ଦେଇ ସେହିସବୁ ପ୍ରଶ୍ନକୁ ଭିତ୍ତି କରି ମୁଁ କହିବି । ତା' ଭିତରୁ ଆପଣମାନେ ନିଜ ନିଜର ପ୍ରଶ୍ନର ଉତ୍ତର ବୁଝି ନେବେ ।

ଏ ଦେଶରୁ ଇଂରେଜମାନେ ଗଲାବେଳେ ନିଜ ହାତରେ ଠୁଳକରି ରଖିଥିବା ସମସ୍ତ କ୍ଷମତା କଂଗ୍ରେସ ହାତରେ ଦେଇଗଲେ । କଂଗ୍ରେସ ଏ ଦେଶର ପରିଚାଳନା ଦାୟିତ୍ୱ ନେବା ପରେ ପରେ ଭାରତ ପାକିସ୍ଥାନ ଭାଗ ଭାଗ ହେଲା । ପୂର୍ବରୁ ଇଂରେଜମାନଙ୍କ ହାତରେ କ୍ଷମତା କେନ୍ଦ୍ରିତ ଥିଲା ଓ ସେତେବେଳେ ଏହାଠାରୁ ବଳି ଅଧିକ କିଛି ଆଶା କରିପିବା ସମ୍ଭବ ନଥିଲା । ଏ କ୍ଷମତା ବହନ କରିବାକୁ ଏକ ଶକ୍ତିଶାଳୀ ହାତର ଆବଶ୍ୟକତା ଥିଲା । ସେତେବେଳେ କଂଗ୍ରେସର ହାତ ଥିଲା ଖୁବ୍ ମଜବୁତ୍ । ତା ହାତକୁ କ୍ଷମତା ଆସିଲା । ସେ ସମୟରେ ଦେଶ ଆଗରେ ନାନାବିଧ

ସଙ୍କଟ ଉପୁଜିଥିଲା । ଭାରତ ସ୍ୱାଧୀନ ହେବା ପରେ ପରେ ପାକିସ୍ଥାନ ହିନ୍ଦୁସ୍ଥାନ ନେଇ ଏପରି କାର୍ଯ୍ୟମାନ ଚାଲିଲା ଯେ, ଯାହା କୌଣସି ସଭ୍ୟଯୁଗରେ ମଧ୍ୟ ସମ୍ଭବ ହୋଇ ନ ଥାନ୍ତା । ହଜାର ଲୋକ ମୃତାହତ ହେଲେ । ଭାରତ ଏବଂ ପାକିସ୍ଥାନ ପ୍ରତ୍ୟେକରୁ ପ୍ରାୟ ଲକ୍ଷ ଲେଖାଏଁ ଲୋକ ନିଜ ଗାଁ, ନିଜ ଘରଦ୍ୱାରରୁ ବିଚ୍ୟୁତ ହେଲେ ଓ ବାସ୍ତୁହରା ହେଲେ । ଗାନ୍ଧୀଜୀ ଆମକୁ ଅହିଂସାର ବାଟ ଦେଖାଇଥିଲେ, ତାହା ସତ୍ତ୍ୱେ ଏତେ କଥା ଘଟିଲା ।

ଇଂରେଜମାନେ ଯିବାବେଳେ ଏ ଦେଶର ରଜାମାନଙ୍କୁ ସ୍ୱାଧୀନ କରିଦେଇ ଯାଇଥିଲେ । ସେମାନେ ଇଚ୍ଛା କରିଥିଲେ ନିଜ ରାଜ୍ୟକୁ ଅଲଗା କରି ରଖିପାରି ଥାଆନ୍ତେ । ଏଣୁ ସେ ସବୁକୁ ସମ୍ଭାଳିବାକୁ ପଡ଼ିଲା । ସର୍ଦ୍ଦାର ପଟେଲଙ୍କ କୁଶଳତା ବଳରେ ଦେଶୀୟ ରାଜ୍ୟମାନେ ସ୍ୱାଧୀନ ଭାରତରେ ମିଶିଲେ । ଏହିରୂପେ ସ୍ୱାଧୀନ ହେଲା ଦିନଠୁଁ ଦେଶ ସଙ୍କଟ ଭିତର ଦେଇ ଗତିକରି ଆସିଛି । ଏବେ ମଧ୍ୟ ସେ ସଙ୍କଟ ଯାଇନାହିଁ । ଏବେ ଭାରତ ଚୀନ ମଧ୍ୟରେ ଯେଉଁ ନୂତନ ସମ୍ପର୍କ ଦେଖାଦେଇଛି, ତାହା ଏକ ବିଶେଷ ଧରଣର ସମ୍ପର୍କ । ଆମକୁ ଏଥିପାଇଁ ହୁସିଆର ହେବାକୁ ହେବ ।

ଆଜି ଆମ ଦେଶର ନେତାମାନେ ସ୍ୱୀକାର କରୁଛନ୍ତି ଯେ, ଦେଶରେ ଦୁଇଦୁଇଟା ପଞ୍ଚବାର୍ଷିକ ଯୋଜନା ସରିବାପରେ ମଧ୍ୟ ଏ ଦେଶରେ ଥିବା ସବା ତଳସ୍ତରର ଲୋକଙ୍କୁ ବିଶେଷ କିଛି ଲାଭ ମିଳିନାହିଁ । ସେମାନଙ୍କର ଉନ୍ନତି ନ ହେବା ତ ଦୂରର କଥା, ବରଂ କେତେକ ସ୍ଥାନରେ ଅବସ୍ଥା ଖରାପ ହୋଇଛି । ଦେଖିବାକୁ ଗଲେ ଗତ ପନ୍ଦର ବର୍ଷରେ ଡାକ୍ତରଖାନା, ସ୍କୁଲ, କଲେଜ ପ୍ରଭୃତିର ସଂଖ୍ୟା ଦେଶରେ ବଢ଼ିଛି । ମାତ୍ର ଯେତେ ସମୟ ଓ ପଇସା

ଏଥିପାଇଁ ଆମେ ଚେଷ୍ଟା କରୁଛୁ ତା ତୁଳନାରେ ଏତେଟିକେ ବିବରଣୀ କାମ ହୋଇ ନାହିଁ । ଅଂଶତଃ ଆଜିର ଯୁଗରେ ପନ୍ଦର ବର୍ଷ ସମୟ କିଛି କମ୍ ନୁହେଁ ।

କଂଗ୍ରେସ ଏ ଦେଶର ଜନତା ଆଗରେ ପ୍ରତିଜ୍ଞା କରିଛି ଯେ ଏକ ଗଣତାନ୍ତ୍ରିକ, ସମାଜବାଦୀ, ଶାନ୍ତିପୂର୍ଣ୍ଣ ଓ ବିକେନ୍ଦ୍ରିତ ଶାସନ ଲୋକଙ୍କ ହାତରେ ଦେବ । ଏ ଦିଗରେ ହିସାବ ବିଶେଷଣ ଥିବ, ପୁଣି ଦେଶ ଗଣତନ୍ତ୍ର ସ୍ୱୀକାରରେ ଚାଲୁଥିବ—ଏ କଥା କଂଗ୍ରେସ ଲୋକମାନଙ୍କୁ କହୁଛି । ଆମେ ଏଠି ଗଣତନ୍ତ୍ରର ନାଟକ ଚଳାଉଛୁ । ମୁଁ ଏଥିପାଇଁ ନାଟକ ଶବ୍ଦ ବ୍ୟବହାର କରୁଛି ଯେ, ଆମ ଦେଶରେ ସାଧାରଣ ଲୋକ ଏଥିପ୍ରତି ଖୁବ୍ ଅଗ୍ରହ ଦେଖାଇ ନାହାନ୍ତି । କାରଣ ଏଥିଲାଗି ଯେଉଁଲି ଶିକ୍ଷା ସେମାନଙ୍କର ଦରକାର ତାହା ସେମାନଙ୍କୁ ଆମେ ଦେଇପାରି ନାହୁଁ । ଭାରତବର୍ଷର ଜନତା ଏବେ ମଧ୍ୟ ନିଜକୁ ଅନାଥ ଓ ଅସହାୟ ମନେକରୁଛି । ଏ ଦେଶ ଯେ ତା'ର ପୈତୃକ ସମ୍ପତ୍ତି ଏହା ବୁଝୁନାହିଁ, ସେ ନିଜେ ହେଉଛି ମାଲିକ ଏବଂ ବାକୀ ଅନ୍ୟମାନେ ତା'ର ଚାକର । ପାଞ୍ଚବର୍ଷ ପାଇଁ ସେ ଯେଉଁ ଚାକର ନିଯୁକ୍ତ କରିବ ତାହାର ରାଜ୍ୟ ସେହିପରି ଚାଲିବ, ଏହିଭଳି କ୍ଷମତା ରହିଥିବାର ବୋଧ ଆଜି ତା'ର ନାହିଁ । ଫଳରେ ଗଣତନ୍ତ୍ର ଏଠି ତ ଚାଲିଛି, ମାତ୍ର ତାର ଅନ୍ତର୍ନିହିତ ଶେଷ ହୋଇ ଯାଉଛି ।

ଆମ ଦେଶରେ ଗଣତନ୍ତ୍ର ସବୁଠାରୁ ବଡ଼ କଥା ଓ ଯାହା ପାଇଁ ଆମେ ପ୍ରତ୍ୟେକ ଗୌରବ ଅନୁଭବ କରିବା ଉଚିତ— ତାହା ହେଉଛି ଆମର ମତପ୍ରକାଶ କରିବାର ଅଧିକାର । ଅବଶ୍ୟ ଭାରତ ରକ୍ଷା ଆଇନ୍ ବଳରେ ଏହାକୁ କେତେକ ପରିମାଣରେ

ସଙ୍କୁଚିତ କରାଯାଇନ୍ତି ; କିନ୍ତୁ ଏତଦ୍ୱାରା ଲୋକଙ୍କର ଏ ଅଧିକାର ବହୁ ପରିମାଣରେ ଅକ୍ଷୁଣ୍ଣ ଅଛି ।

ଆମେ କହୁଛୁ ଯେ, ଆମେ ଶାନ୍ତିପ୍ରିୟ । ଆମର ଶାନ୍ତିନୀତିକୁ ଦୁନିଆ ପ୍ରଶଂସା କରିଛି ଓ ଆମେ ଶାନ୍ତିପ୍ରିୟ ବୋଲି ଦୁନିଆରେ ଆମର ବିଶିଷ୍ଟ ସ୍ଥାନ ରହିଛି; ମାତ୍ର ଯେଉଁ ଉପାୟରେ ଆମେ ଗୋଆକୁ ସ୍ୱାଧୀନ କଲୁ ତଦ୍ୱାରା ବିଶ୍ୱ ସମ୍ମୁଖରେ ଆମର ରୂପ ବଦଳିଛି । ବିଶ୍ୱବାସୀ ଆମର ଶାନ୍ତିନୀତିକୁ କେତେକ ପରିମାଣରେ ସନ୍ଦେହ ଦୃଷ୍ଟିରେ ଦେଖୁଛନ୍ତି । ପୁଣି ପାକିସ୍ଥାନ ସହିତ ଆମର ସମ୍ପର୍କ ଭିନ୍ନ ଆକାରର ହୋଇଛି । ଆମକୁ ସେଥିପାଇଁ ଆମର ସୈନ୍ୟ ବିଭାଗର ବଜେଟ୍ ବଢ଼ାଇବାକୁ ପଡ଼ୁଛି । ସୈନ୍ୟ ବିଭାଗରେ ଖର୍ଚ୍ଚ ବଢ଼ାଇବା ଦ୍ୱାରା ଆମେ ଅନ୍ୟ ଦେଶମାନଙ୍କ ତୁଳନାରେ ଖୁବ୍ ଗୋଟାଏ ଅପରାଧ କଲୁ ଏପରି କହୁ ନାହିଁ । ଆମକୁ କେହି ଦୋଷ ନ ଦେଉଥିଲେ ମଧ୍ୟ ଆମକୁ ଶାନ୍ତିପ୍ରିୟ ବୋଲି କହିବାକୁ ଗଲାବେଳେ ଦୁନିଆର ଲୋକଙ୍କୁ ଭାବିବାକୁ ପଡ଼ୁଛି ।

ଦଳଗତ ରାଜନୀତି ପଞ୍ଚାୟତର ଶତ୍ରୁ—

ପୁଣି ତୃତୀୟ କଥା ହେଉଛି ବିକେନ୍ଦ୍ରୀକରଣ । ଯେତେବେଳେ ଦେଖାଗଲା ଯେ, କେବଳ ନେତାଙ୍କ ହାତରେ କ୍ଷମତା ରହିଲେ ସବୁକାମ ହେବନାହିଁ, ସେତେବେଳେ କ୍ଷମତା ଲୋକଙ୍କ ହାତକୁ ଦେବାର କଥା ହେଲା । ସେଇଠୁ ଆସିଲା ପଞ୍ଚାୟତରାଜର ବିଚାର । ଲୋକଙ୍କ ହାତକୁ କ୍ଷମତା ଆସୁ ବୋଲି ଭାରତବର୍ଷ ଧରି ସତତ ଆମେ କହି ଚାଲିଛୁ । କିନ୍ତୁ ଏବେ ଆମର ନେତାମାନେ ଯେ ତାହା

ବୃଦ୍ଧି ପାଉଛନ୍ତି ଏହା ଅତ୍ୟନ୍ତ ଆନନ୍ଦର ବିଷୟ । ମାତ୍ର ପଞ୍ଚାୟତଗୁଡ଼ିକର ମଥାନ ଉପରକୁ ଦେଇ ସେମାନେ ନିର୍ମାଣ କରିବାକୁ ଚାହୁଁଛନ୍ତି । ଉପରଠାରୁ କ୍ଷମତା ନେଇ ଆସି ଲୋକଙ୍କ ହାତକୁ ବାଣ୍ଟିବାର ଦିଆ ଯାଉଛି ସିନା, ତଳଠାରୁ କ୍ଷମତାର ନିର୍ମାଣ ହେଉ-ନାହିଁ । ଅନେକଙ୍କୁ ଉପରେ ଖଣ୍ଡେ ପଥର ଥୁଆ ହୋଇଛି । ତଳଆଡ଼କୁ ଗଡ଼େଇ ଗଡ଼େଇ ତାକୁ ଗୁଣ୍ଡ କରିଦେବାକୁ, ସେଥିରୁ ପଥରର ଗୁଣ୍ଡ ସିନା ବାହାରିବ, କହୁଣି ବାହାରିବ ନାହିଁ । ସେହିପରି ଉପରର କ୍ଷମତା ତଳକୁ ଆସିବା ଦ୍ୱାରା ତା'ର ଆକାରର ସିନା ଫରକ ହେଉଛି; କିନ୍ତୁ ଗୁଣର ପରିବର୍ତ୍ତନ ଘଟୁନାହିଁ । ଉପର ସ୍ତରରେ ଆଜି ଯେମିତି ଢଙ୍ଗରେ ଶାସନ ଚଳାଉଛନ୍ତି, ତା'ର ପ୍ରଭାବ ତଳସ୍ତରରେ ମଧ୍ୟ ପଡ଼ୁଛି । ଅଧିକ ଭୋଟ ଟାଣିବା ପ୍ରୟାସ, ଦଳଗତ ନିର୍ବାଚନ—ଏସବୁ ପଞ୍ଚାୟତ ସ୍ତରରେ ଗ୍ରାମପଞ୍ଚାୟତମାନଙ୍କରେ ଘଟୁଛି । ଉପରର ଦଳାଦଳି ତଳସ୍ତରରେ ପ୍ରତିଫଳିତ ହେଉଛି । ଗ୍ରାମପଞ୍ଚାୟତମାନେ ଝଗଡ଼ାର ଆଖଡ଼ା ପାଲଟିଛନ୍ତି । ଦିଲ୍ଲୀ କିମ୍ବା ଭୁବନେଶ୍ୱରରେ ଯେଉଁମାନେ ଅଧିକ ଭୋଟର ପ୍ରୟାସ କରନ୍ତି, ସେମାନଙ୍କ ଭିତରେ ଦଳବନ୍ଦୀ ଥାଏ । ଜଣେ ଅନ୍ୟ ଜଣକ ସହିତ ପ୍ରତିଦିନ ସିଧାସଳଖ ସମ୍ପର୍କରେ ଆସନ୍ତି ନାହିଁ; କିନ୍ତୁ ଗାଁ କଥା ତ ଏକଦମ୍ ନିଆରା । ଘେରିଆ ଘେରିଆ ଗାଁ । କେତେଟା ବୋଲି ଘର । ସମସ୍ତେ ଓଳିକି ଓଳି ବାନ୍ଧି ରହିଛନ୍ତି । ସେଠି ଯଦି ଅଧିକ ସଂଖ୍ୟା ଦ୍ୱାରା ଅଡ଼ୁଆର ନିଷ୍ପତ୍ତି ହୁଏ, ତାହାହେଲେ ପରିଣତି କ'ଣ ହେବ ? ଉପର ସ୍ତରରେ ଦିଲ୍ଲୀ କିମ୍ବା ଭୁବନେଶ୍ୱରରେ କ୍ଷମତାର ଦଳାଦଳି, ଈର୍ଷା ଏବଂ ବିଦ୍ୱେଷ ଆଦି ଯେଉଁସବୁ ମାହାର୍ଯ୍ୟ ଦେଖୁଛି, ତାହାର ବିକେନ୍ଦ୍ରୀକରଣ ବା ତା'ର ଭାଗଯୁକ୍ତକରଣ ଘଟି ଗାଁ ସବୁ ମହାଭାରତ ହେବ । ଗାଁରେ ସଂଖ୍ୟା ବଳରେ ବହୁମତର ପ୍ରୟାସ

କଲବା ଏକ ବଡ଼ ଦୋଷ । ସେଇଥିପାଇଁ ଏଠି ପଞ୍ଚପରମେଶ୍ୱରର ସୃଷ୍ଟି ଥିଲା । ଅର୍ଥାତ୍ ପାଞ୍ଚଜଣ ଲୋକ ଯାହା ଏକମତ ହୋଇ କହି ଦେଉଥିଲେ; ତାହା ପରମେଶ୍ୱରଙ୍କର ନିଷ୍ପତ୍ତି ବୋଲି ଧରିନିଆ ଯାଉଥିଲା । କିନ୍ତୁ ଏବେ ତ ପାଞ୍ଚଜଣଙ୍କ ଭିତରୁ ତିନିଜଣ ଯଦି ଗୋଟିଏ କଥାରେ ଏକମତ ହେଲେ, ଦୁ'ଜଣ ତା'ର ବିରୋଧରେ ଥିଲେ ସୁଦ୍ଧା ତାକୁ ଈଶ୍ୱରଙ୍କ ନିଷ୍ପତ୍ତି ବୋଲି ଧରିନିଆ ଯାଉଛି । ଏହିରୂପେ ତିନିମୂର୍ଖ ବୋଲି ହରି ମାନିନେଇ ଅଧିକ ସଂଖ୍ୟକ ଲୋକଙ୍କ କଥାକୁ ଅଳ୍ପ ସଂଖ୍ୟକ ଲୋକଙ୍କ ଉପରେ ଲଦି ଦିଆ-ଯାଉଛି । ଗାଁରେ ଜାତି, ଧର୍ମ, ଭାଷା ଓ ଆର୍ଥିକ ବ୍ୟବହାରରେ ଚାରିସ୍ତରୀୟ ଭେଦ ରହିଛି । ମାଲିକ ଓ ମୂଲିଆ ଭିତରେ ଭଲ ସମ୍ପର୍କ ନାହିଁ । ସ୍ତ୍ରୀ, ପୁରୁଷ ଭିତରେ ପାର୍ଥକ୍ୟ ଅଛି । ଓଡ଼ିଶାରେ ଏପରି ଗ୍ରାମ ସବୁ ଅଛି, ଯେଉଁଠି ମୋଟ ପାଠୁଆ ସଂଖ୍ୟା ଶହକେ କୋଡ଼ିଏ । ମାତ୍ର ସେଥିରୁ ପାଠୋଇ ସ୍ତ୍ରୀଲୋକଙ୍କ ସଂଖ୍ୟା ମୋଟେ ଶତକଡ଼ା ସାତ କିମ୍ବା ଆଠ । ଏଭଳି ବିଷମ ପରିସ୍ଥିତିରେ ଉପର ସ୍ତରରେ ରହିଥିବା ନିର୍ବାଚନର ଡଙ୍କା ଯଦି ତଳ ସ୍ତରରେ ଗାଁକୁ ଅଣାଯାଏ ଓ ଏଠାରେ ଦଳଗତ ରାଜନୀତି ସଙ୍ଗକୁ ବହୁମତରେ ନିଷ୍ପତ୍ତି ହେଲେ, ତାହା ହେଲେ କାମ ହେବ ନାହିଁ ।

କ୍ଷମତା ମନୁଷ୍ୟକୁ କଳୁଷିତ କରେ—

ଏହା ଛଡ଼ା ଗ୍ରାମପଞ୍ଚାୟତର ରଚନା ଆଜି ଯେଉଁଭଳି ହୋଇଛି, ସେ ମଧ୍ୟ ବଡ଼ ଅସୁବିଧାଜନକ । ଓଡ଼ିଶାରେ ପାଞ୍ଚହଜାର ଲୋକସଂଖ୍ୟା ଥିବା ଗୋଟିଏ ଲେଖାଏଁ ଅଞ୍ଚଳକୁ ନେଇ ଗ୍ରାମ-ପଞ୍ଚାୟତ ଗଢ଼ାଯାଇଛି । ଆସାମରେ ତିନିହଜାର ଲୋକସଂଖ୍ୟା ବିଶିଷ୍ଟ ଅଞ୍ଚଳକୁ ନେଇ ପଞ୍ଚାୟତ ହୋଇଛି । ଅର୍ଥାତ୍

ଗୋଟିଏ ଗୋଟିଏ ପଞ୍ଚାୟତ ଅଞ୍ଚଳ ଭିତରେ କୋଡ଼ିଏ ପଚିଶଟି ଗାଁ ଆସିଯାଉଛି । ଓଡ଼ିଶାରେ ଗାଁ ସଂଖ୍ୟା ଷାଠିଏ ହଜାର ସହିତ । କିନ୍ତୁ ସହରର ସଂଖ୍ୟା ମୋଟେ ପଚିଶ ବା ଷାଠିଏ । ଭାରତରେ ଶତକଡ଼ା କୋଡ଼ିଏ ଲୋକ ସହରରେ ରହନ୍ତି । ଯୌରାଷ୍ଟ୍ର ପ୍ରଭୃତି କେତେକ ଅଞ୍ଚଳରେ ସହରରେ ରହୁଥିବା ଲୋକଙ୍କ ସଂଖ୍ୟା ଅବଶ୍ୟ ଶତକଡ଼ା ତୃରିଶ । କିନ୍ତୁ ଓଡ଼ିଶାରେ ତ ସହରିଆ ଲୋକଙ୍କ ସଂଖ୍ୟା ଶହକେ ମୋଟେ ଛ'ଜଣ । ଏଠାରେ ଗାଁ ହିଁ ଶ୍ରେଷ୍ଠ । ସେଥିଭିତରୁ ପୁଣି କେତେଭାଗ ଆଦିବାସୀ । ସହରରେ ହୁଲ ଜଣ ରହିଲେ ଗାଁରେ ଶହେ ଜଣ ରହୁଛନ୍ତି । ସହରରେ ବହୁତ ଲୋକଙ୍କୁ ଏକାଜାଗାରେ ରହିବାକୁ ହୁଏ । ତଥାପି କାହାସଙ୍ଗେ କାହାର ପରିଚୟ ନଥାଏ । କିନ୍ତୁ ଗାଁରେ ତ ସମସ୍ତେ ସମସ୍ତଙ୍କୁ ଜାଣନ୍ତି । ସକାଳୁ ଉଠିଲେ ଜଣେ ଅପରର ମୁହଁ ଦେଖେ । ଏପରି ପରିସ୍ଥିତିରେ ବହୁ ମତରେ ନିଷ୍ପତ୍ତି ସହରରେ କରିବା ହୁଏତ ଚଳିପାରେ । ମାତ୍ର ଗାଁରେ ଏକଥା ଖାଟିବ ନାହିଁ । ଗ୍ରାମପଞ୍ଚାୟତ ପାଞ୍ଚହଜାର ଲୋକଙ୍କର ଗୋଟିଏ ଅନୁଷ୍ଠାନ ହେଲେ, ସେଠକୁ କୋଡ଼ିଏ ପଚିଶଟି ଗାଁର ନିର୍ବାଚିତ ପ୍ରତିନିଧି ଆସିଲେ, ସେମାନେ ଯେ କି ପ୍ରସ୍ତାବ ପାସ୍ କରିବେ ଏବଂ ସେମାନଙ୍କ ଦ୍ୱାରା ଯେ କି କାମ ହୋଇପାରିବ ମୁଁ ବୁଝି ପାରୁନାହିଁ । ଗୋଟିଏ ଗାଁ ଏଆଡ଼େ ଟାଣିବ ତ ଅନ୍ୟ ଗାଁ ସେଆଡ଼େ ଟାଣିବ । ପରସ୍ପରଠାରୁ ସୁବିଧା ଟଣାଟଣି ଛଡ଼ା ସେଠାରେ ଆଉ କିଛି ହୋଇପାରିବ ନାହିଁ । ଏଣୁ ଗ୍ରାମପଞ୍ଚାୟତ ଉଦ୍ଦେଶ୍ୟ ତ ଖୁବ୍ ଭଲ । ମାତ୍ର ତାହାସତ୍ତ୍ୱେ ସେଥିରୁ ଯେ ପ୍ରକାର ଲାଭ ମିଳିବ ବୋଲି ଆଶା କରାଯାଉଥିଲା, ସେପରି ଲାଭ ମିଳୁନାହିଁ, ବରଂ ବେଶୀ କ୍ଷତି ହେଉଛି ।

ଗାଁରେ ଗ୍ରାମପଞ୍ଚାୟତ ଦ୍ୱାରା ଉନ୍ନତି ହେଉଛି ବୋଲି କ'ଣ ଆମେ ଗାଁ ହାତକୁ କ୍ଷମତା ଆସିବା କଥାଟା ଭୁଲି କରି-ଦେବା ? କ୍ଷମତା ଭୁବନେଶ୍ୱରରେ ଗଚ୍ଛିତ ଅଛି ବୋଲି ଆମେ "ଭୁବନେଶ୍ୱର ହେ ! ଅନ୍ତର୍ଯାମୀ, ତ୍ରିପୁରାରି" ବୋଲି ଭଜନ ଗାଇ ବସିବା ? ନା' ସେ କଥା ହୋଇପାରିବ ନାହିଁ । ଚମ୍ପୁଗାଇ ବସିରହିବାଟା ଉଚିତ ନୁହେଁ । ଗାଁ ହାତକୁ କ୍ଷମତା ଆସିବା ଉଚିତ । ମାତ୍ର ଗାଁ'ଆଣୁ ଏହାର ମୂଲ୍ୟ ବୁଝିବା ଦରକାର । କୁହା ଯାଇଥାଏ ଯେ Power corrupts the man and absolute power corrupts absolutely —ଅର୍ଥାତ୍ କ୍ଷମତା ମନୁଷ୍ୟକୁ କଳୁଷିତ କରେ ଏବଂ କ୍ଷମତା ଅଧିକୁ ଯେ ଯେତେ ପରିମାଣରେ ଯାଏ, ସେ ସେତିକି ଅଧିକ ପରିମାଣରେ ଦୁଷ୍ଟ ହୁଏ । ବେଦରେ ଗୋଟିଏ ଉକ୍ତି ଅଛି ଯେ, ଜାହାକୁ ସତ୍ୟବାଦୀ କି ନୁହେଁ ବୋଲି ଜାଣିବାକୁ ହେଲେ ତା' ହାତରେ ଖଣ୍ଡେ ତମ୍ବାଖଣ୍ଡ ଧରେଇ ଦିଅ । ଯଦି ହାତ ନ ପୋଡ଼ି ଯାଇଥାଏ, ତ'ହେଲେ ଜାଣିବ ଯେ, ସେ ଲୋକ ସତ୍ୟବାଦୀ । ଏହି କଥାର ତାତ୍ପର୍ଯ୍ୟ କ'ଣ ? ଏହାର ଅର୍ଥ ହେଉଛି ଏହା ଯେ, ଯେଉଁ ଲୋକ ସତ୍ୟକୁ ଧାରଣ କରିଥାଏ, ତାକୁ ନିଆଁର ତାତ ଛୁଇଁ ପାରେ ନାହିଁ ।

ତ୍ୟାଗବିନା କ୍ଷମତା ହଜମ ହେବନାହିଁ—

ଆମକୁ ସ୍ୱାତନ୍ତ୍ର୍ୟ ମିଳିଛି । ଏଥିପାଇଁ ଆମକୁ କିଛି ତ୍ୟାଗ କରିବାକୁ ହେଲା । ଯେଉଁମାନଙ୍କ ହାତରେ ଆମେ କ୍ଷମତା ଅର୍ପଣ କଲୁଁ, ଦେଶପାଇଁ ସେମାନେ ତ୍ୟାଗ ସ୍ୱୀକାର କରିଥିଲେ । ଯଦି ବିନା ତ୍ୟାଗରେ ଆମକୁ ସ୍ୱାଧୀନତା ମିଳିଥା'ନ୍ତା, ତା'ହେଲେ ଆମ

ଦଶା ପାକିସ୍ଥାନ ପରି ହୋଇଥାନ୍ତା ଓ ବିନା ତ୍ୟାଗରେ ହାତକୁ କ୍ଷମତା ଆସିଲେ, ଅବସ୍ଥା କ'ଣ ଘଟେ—ଏହାର ଧାରଣା କରିବାକୁ ହେଲେ ଆମେ ପାକିସ୍ଥାନର ଦୃଷ୍ଟାନ୍ତ ଦେଖିପାରୁ । ମୁଁ ଏ କଥା ପାକିସ୍ଥାନକୁ ସମାଲୋଚନା କରିବାପାଇଁ କହୁନାହିଁ । ବର୍ଷକ ତଳେ ପାକିସ୍ଥାନ ଯାଇଥିଲି ଓ ସେଠିକାର ଜନତାକୁ ନିଜ ଆଖିରେ ଦେଖିଛି । ମୁଁ ଜାଣେ ଯେ ପାକିସ୍ଥାନ ଓ ଭାରତର ଜନତା ମଧ୍ୟରେ ଗୁଣଗତ କୌଣସି ପାର୍ଥକ୍ୟ ନାହିଁ । କହିବାର ତାତ୍ପର୍ଯ୍ୟ ହେଉଛି ଯେ, ଦିଲ୍ଲୀ ବା ଭୁବନେଶ୍ୱର ଆଉ ଆଜି ଯେଉଁ କ୍ଷମତା ଗାଁ ଆଡ଼େ ଆସୁଛି, ତାହାକୁ ହାତକୁ ନେବାକୁ ହେଲେ ଲୋକେ ଗାଁ ପାଇଁ କିଛି ତ୍ୟାଗ କରିଥିବା ଆବଶ୍ୟକ । ନ ହେଲେ କ୍ଷମତା ଜୀର୍ଣ୍ଣ ହୋଇପାରିବ ନାହିଁ । ସ୍ୱାଧୀନତା ପରେ ଦେଶର ସବୁଠାରୁ ଶ୍ରେଷ୍ଠ ଲୋକଙ୍କ ହାତକୁ କ୍ଷମତା ଦିଆଯାଇଥିଲା । ସେମାନେ ଦେଶ ପାଇଁ ତ୍ୟାଗ କରିଥିଲେ । ସେହିପରି ଆଜି ଗାଁରେ ଯେଉଁମାନେ ନିଜ ହାତକୁ କ୍ଷମତା ନେଉଛନ୍ତି, ସେମାନେ ଗାଁ ଲାଗି କିଛି ସ୍ୱାର୍ଥ ତ୍ୟାଗ କରିଥିବା ଉଚିତ । କ୍ଷମତା ହେଉଛି ଅଗ୍ନି ସ୍ୱରୂପ । ଯଦି ହାତ ସତ୍ୟ ଦ୍ୱାରା ଆବୃତ ହୋଇଥିବ, ତାହାହେଲେ କ୍ଷମତାରୂପୀ ଅଗ୍ନି ସେ ହାତକୁ ପୋଡ଼ି ପାରିବ ନାହିଁ । ମାତ୍ର ସତ୍ୟ ନ ଥିଲେ, ତାହା ହାତକୁ ପୋଡ଼ି ପକାଇବ । ଏଣୁ ଆମର ମନେରଖିବା ଉଚିତ ଯେ, ଯେଉଁ କ୍ଷମତାର ଅଗ୍ନିକୁ ଆମେ ହାତକୁ ନେଉଛୁ, ତା'ର କୌଣସି ଆଧାର ଥିବା ଉଚିତ । ସେ ଆଧାରର ସ୍ୱରୂପ କ'ଣ ? ଗାଁର ପ୍ରେମଶକ୍ତି ହିଁ ତା'ର ଆଧାର ହେଉ । ଗ୍ରାମଦାନ ପରେ ଯେଉଁ ଛୋଟିଆ ଛୋଟିଆ ଗ୍ରାମସଭାଟିମାନ ପ୍ରତ୍ୟେକ ଗ୍ରାମରେ ଠିଆହେବ, ତାଙ୍କୁ ଗ୍ରାମପଞ୍ଚାୟତର ଅଧିକାର ଦିଆଯାଉ । ସେ ଗ୍ରାମସଭାର ରୂପ ଆଜିର ଗ୍ରାମପଞ୍ଚାୟତ ପରି ହେବନାହିଁ । କାରଣ ଭୂମିବାନ ଲୋକେ

ଗ୍ରାମଦାନ ପରେ ଗାଁର ଭୂମିହୀନଙ୍କ ପାଇଁ ଜମି ଦେଉଥିବେ ଏବଂ ଭୂମିବାନ୍ ଓ ଭୂମିହୀନ—ଏ ଉଭୟଙ୍କ ମଧ୍ୟରେ ପ୍ରେମର ସମ୍ବନ୍ଧ ସୃଷ୍ଟ ହୋଇଥିବ । ଗାଁର ସବୁ ଜମି ଜଳ ମତରେ ଗ୍ରାମସଭା କାର୍ଯ୍ୟ କରିବ । ଲୋକଙ୍କ ପାଇଁ କୃଷିଜମିରୁ କେଉଁଏ ଭାଗରୁ ଭାଗେ ଦାନ ତ ଦିଆଯାଉଥିବ, ଉପରନ୍ତୁ ପ୍ରତ୍ୟେକ ଲୋକ ପ୍ରତିବର୍ଷ ନିଜ ଆୟର କିଛି ଅଂଶ ମଧ୍ୟ ଗ୍ରାମସଭାକୁ ଦାନ କରିବ । ଅଜି ତ ଆମେ ଦାନ କଥାର ନାମ ପର୍ଯ୍ୟନ୍ତ ଉଚ୍ଚାରଣ କରୁନାହୁଁ । ଟିକସ କଥା କହୁଛୁ । ଟିକସ କଥାର ଦୁର୍ନାମ ଏପରି ହୋଇଗଲାଣି ଯେ, ପଞ୍ଚାୟତବାଲା ଗାଁ ଲୋକଙ୍କ ଉପରେ ନୂଆ ଟିକସ ବସାଇବାକୁ ଡରୁଛନ୍ତି । କାରଣ ନୂଆ ଟିକସ ବସାଇବା କଥା ଉଠିଲେ ଗାଁ ଗାଁରେ ଝଗଡ଼ା ସୃଷ୍ଟି ହୋଇଯିବ ।

## ଗ୍ରାମଦାନ ପରେ ଗ୍ରାମର କାରବାର କପରି ଚାଲିବ—

ଏଠାରେ ମୁଁ ଗୋଟିଏ ନୂଆ କଥା ଜାଣିଲି । ସରକାର କୃଷୀମାନଙ୍କୁ ଗ୍ରାମପଞ୍ଚାୟତ ଜରିଆରେ ଧାନ ଯୋଗାଉଛନ୍ତି । ମାତ୍ର ପଞ୍ଚାୟତମାନେ ତା' ଉପରେ ସୁଧ କଷି କୃଷୀଙ୍କଠାରୁ ଆଦାୟ କରୁଛନ୍ତି । ଏଥିରୁ ବିଚାର କରନ୍ତୁ ଯେ, ଗ୍ରାମପଞ୍ଚାୟତମାନଙ୍କର ଆଶ୍ରୟ କେତେ ଦୁର୍ବଳ ! ସେମାନେ ସରକାର ଗରିବ କୃଷୀ ଲାଗି ସାହାଯ୍ୟ ସ୍ୱରୂପ ଧାନ ଆସୁଛି, ତାହାର ଉପରେ ସୁଧ କଷି ଆଦାୟ କରୁଛନ୍ତି । ଏହାର ଅର୍ଥ ଆଉ କଣ ହୋଇପାରେ । ଏହାର ଅର୍ଥ ଏହା ଯେ, ଲୋକମାନଙ୍କଠାରୁ ଦାନ ମିଳିପାରିବ ବୋଲି ପଞ୍ଚାୟତମାନେ ବିଶ୍ୱାସ କରିପାରୁନାହାନ୍ତି । ସେଥିପାଇଁ କୃଷୀଙ୍କ ଉପରେ ସୁଧ କଷି ସେମାନେ ପଞ୍ଚାୟତର ଆୟ ବଢ଼ାଉଛନ୍ତି ମାତ୍ର ଏ ବିଚାର ହେଉଛି ଏକ ଭ୍ରାନ୍ତ ବିଚାର ।

ଗ୍ରାମଦାନ ପରେ ଯେଉଁ ଗ୍ରାମସଭାର ନିର୍ମାଣ ହେବ—ତାହା ଗ୍ରାମ-ମାତା ପରି ଗାଁ ଲୋକଙ୍କୁ ପାଳନ କରିବ । ପ୍ରତ୍ୟେକ ଗାଁ, ପ୍ରତିବର୍ଷ ଲୋକେ ନିଜ ଉତ୍ପନ୍ନ ଫସଲର ଗୋଟାଏ ନିର୍ଦ୍ଦିଷ୍ଟ ଅଂଶ ଗ୍ରାମକଳ୍ପ ପାଇଁ ଦାନ ଦେବେ । ସେଇଥିରୁ ଗାଁର ପାଣ୍ଠି ସୃଷ୍ଟି ହେବ । ତାହା ଗାଁର ସୁରକ୍ଷା, ଶିକ୍ଷା ଏବଂ ନ୍ୟାୟର ବ୍ୟବସ୍ଥା କରିବ ।

ଥରେ ଜଣେ ଭାଇ ପ୍ରଶ୍ନ କଲେ – ମନେକରନ୍ତୁ ଗ୍ରାମଦାନ ହେଲା । ଲୋକେ କୋଡ଼ିଏ ଭାଗରୁ ଭାଗେ ଜମି ମଧ୍ୟ ଦାନ କଲେ । ଗ୍ରାମସଭାକୁ ବାକୀ ଜମିର ମାଲିକାନା ଅର୍ପଣ କଲେ । ପ୍ରତିବର୍ଷ ନିଜ ଫସଲର ଗୋଟାଏ ନିର୍ଦ୍ଦିଷ୍ଟ ଅଂଶ ମଧ୍ୟ ଗ୍ରାମସଭାକୁ ଦେଲେ । କିନ୍ତୁ ଯେଉଁ କେତେଜଣଙ୍କ ହାତରେ ଗ୍ରାମସଭାର ପାଣ୍ଠି ରହିବ, ସେମାନେ ଯଦି ତାହା ଆତ୍ମସାତ୍ କରନ୍ତି, ତାହାହେଲେ କ'ଣ କରାଯିବ ? —ଏ ବଡ଼ ଦୁର୍ଭାଗ୍ୟର କଥା ଯେ, ଲୋକେ ଗ୍ରାମଦାନର ଏତେ କଥାକୁ ସ୍ୱୀକାର କରିନେଲାପରେ ସୁଦ୍ଧା ମନେକରୁଛନ୍ତି ଯେ, ସେଠାରେ ମଧ୍ୟ ଟଙ୍କା ତୋଷରପ ହେବ । ମୁଁ ସେଥିପାଇଁ ସେ ଭାଇଙ୍କୁ କହିଲି "ଯାହାହେଉ ଆପଣଙ୍କର କଳ୍ପନା ଶକ୍ତି ଖୁବ୍ ପ୍ରଖର । ମାତ୍ର ଏଭଳି ପ୍ରଖର କଳ୍ପନାଶକ୍ତି ଭଗବାନ ମୋତେ ଦେଇନାହାନ୍ତି ।" ତାହା ସତ୍ତ୍ୱେ ଫୁଲପ୍ରୁଫ୍ ଓ ନେଭ୍ ପ୍ରୁଫ୍ (ଯାହାକୁ ମୂଢ଼ ସୁଦ୍ଧା ବୁଝିଯିବ ଓ ଯହିଁରେ ଠକେଇ ପଶିପାରିନାହିଁ) ଯୋଜନା ସ୍ୱରୂପ ମୁଁ ଆପଣଙ୍କୁ ଏଇଆ କହିପାରେ ଯେ, ଗ୍ରାମସଭାର ପାଣ୍ଠି ବ୍ୟାଙ୍କ୍‌ରୁ (ବା ସେହିଭଳି କିଛି ସଂସ୍ଥା—ଯେଉଁଠି ଟଙ୍କା ରଖା ଯାଇଥିବ ) ଉଠାଇବା ଲାଗି ଗାଁର ଜଣେ ଲୋକଙ୍କ ସ୍ୱାକ୍ଷର ବଦଳରେ ଖୁବ୍ ପାଞ୍ଚଜଣଙ୍କ ସ୍ୱାକ୍ଷରରେ ତାହା ଉଠାଯାଉ । ଜଣେ ଲୋକ ବଦଳରେ ଖୁବ୍ ପାଞ୍ଚଜଣଙ୍କ ନାମରେ ଏକାଠି ମିଶି ଟଙ୍କା ଉଠାଗଲେ ଅର୍ଥ ଆତ୍ମସାତ୍ କରିବାର ଆଶଙ୍କା କମିଯିବ । ଇଏ ତ

କୋଟିଏ ଉଦାହରଣ ମାତ୍ର । ଗ୍ରାମଦାନ ଗାଁରେ ଲୋକେ ନିଜର ବୁଦ୍ଧି ଖଟେଇ ଯେଉଁଭଳି ରହିବେ, ନିଜ ଗାଁର ଉନ୍ନୟନ ଲାଗି ସେହିଭଳି ନାନାପ୍ରକାର କରିପାରନ୍ତି । କିନ୍ତୁ ଅସଲ କଥା ହେଲା ଗାଁରେ ବିଶ୍ୱାସର ଶକ୍ତି ସୃଷ୍ଟି କରିବା । ଏଭଳି ବିଶ୍ୱାସର ସୃଷ୍ଟି ଏକା-ବେଳକେ ଗୋଟିଏ ବଡ଼ ଅଞ୍ଚଳରେ ହେବା ସମ୍ଭବ ନୁହେଁ । ଏଣୁ ପଞ୍ଚାୟତ ବଦଳରେ ଗ୍ରାମସଭାଦ୍ୱାରା ଗାଁରେ ଏହାର ପ୍ରୟୋଗ କରାଯାଉ । ଗାଁର ଅର୍ଥ ମୁଁ କୋରାପୁଟ ଜିଲ୍ଲାରେ ଥିବା ତିନି ବା ଚାରି ପରିବାରବିଶିଷ୍ଟ ଗାଁ କଥା କହୁନାହିଁ । ଏହାର ମଧ୍ୟ କୌଣସି ସୀମା ରେଖା ଥିବା ଉଚିତ । ଆସାମରେ କୋରାପୁଟ ଜିଲ୍ଲାପରି ତିନି ଚାରି ଘର ବିଶିଷ୍ଟ ଛୋଟ ଗାଁ ସବୁ ହେଉଛି । ଏଣୁ ଏକକ ହିସାବରେ ସେଠା ସରକାର ଅନ୍ୟୂନ ୨୦ ପରିବାର ବା ୧୦୦ ଜନସଂଖ୍ୟ ବିଶିଷ୍ଟ ଅଞ୍ଚଳକୁ ଗ୍ରାମ ବୋଲି ସ୍ୱୀକାର କରିଛନ୍ତି । ଏଭଳି ଗାଁ ଯେଉଁଠି ଅଛି, ସେଠାରେ ୧୦୦ ଜନସଂଖ୍ୟାକୁ ଗୋଟିଏ ଗୋଟିଏ ଏକକ ବୋଲି ମାନିନେଇ କାମ ଆରମ୍ଭ କଲେ ଗ୍ରାମପଞ୍ଚାୟତକୁ ସୁଧାରି ନେଇ ହେବ । ଗାଁର ସବୁ ଘରୁ ବୟସ୍କ ଲୋକଙ୍କୁ ନେଇ ଗ୍ରାମସଭା ଗଠନ ହେବ । ସେମାନେ ତିନୋଟି କଥା ପ୍ରତି ସବୁବେଳେ ଧ୍ୟାନ ରଖିବେ—

(୧) ଗାଁର ସବୁ ନିଷ୍ପତ୍ତି ସର୍ବସମ୍ମତିରେ କରାଯିବ । ଅର୍ଥାତ୍ ଯେ କୌଣସି ସିଦ୍ଧାନ୍ତ ଗୃହୀତ ହେବ ଗାଁର ସବୁଲୋକ ଏକମତ ହେବାପରେ । (୨) ବା ସର୍ବାନୁମତିରେ କାମ ଚାଲିବ । ଏହାର ଅର୍ଥ ହେଉଛି କୌଣସି ବିଷୟରେ ଅଧିକ ସଂଖ୍ୟକ ଲୋକ ଅନୁକୂଳ ମତ ପ୍ରକାଶ କଲେ, ବାକି ଲୋକେ ଏହାର ବିରୋଧ ନ କରି ଉଦାସୀନ ରହୁଥିବେ ବା ଏହାକୁ ବିରୋଧ କରୁ ନ ଥିବେ । (୩) ପୁଞ୍ଜି ଟ୍ୟାକ୍ସ ବଦଳରେ ଦାନ ହିଁ ଗ୍ରାମକୋଷ ପୁଞ୍ଜିର ମୁଖ୍ୟ ଆଶ୍ରୟ ହେବ ।

ଗ୍ରାମପଞ୍ଚାୟତଠାରୁ ଆଜ ଯାହା ଆଶା କରାଯାଉଛି, ଏହାକୁ କରିପାରିଲେ ତାହା ପୂର୍ଣ୍ଣ ହୋଇପାରିବ । ବିଦ୍ୱେଷ ଓ ଈର୍ଷାର ଯେଉଁ ଭୟ ଆଜ ଗାଁ ଗାଁରେ ଅଛି, ଗାଁ ଲୋକଙ୍କୁ ସେଥିରୁ ମୁକ୍ତି ମିଳିବ ।

ସେଦିନ ଓଡ଼ିଶାର ଉପମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ ମିତ୍ର ମୋତେ ସ୍ୱାଗତ କରିବାକୁ ଆସି ଭାଷଣରେ କହିଲେ ଯେ, "ଗ୍ରାମଦାନ ହେଲେ ଭଲ" । କାରଣ ଏଥିରେ ଭୂମିର ମାଲିକାନା ଗ୍ରାମସଭା ହାତକୁ ଯାଉଛି । କୋଡ଼ିଏ ଭାଗରୁ ଭାଗେ ଭୂମି ଭୂମିବାନ ଲୋକେ ଗରିବମାନଙ୍କପାଇଁ ଛାଡ଼ି ଦେଉଛନ୍ତି । ବାକି ଜମି ସେମାନଙ୍କ ହାତରେ ରହୁଛି । ପୁଣି ସେମାନଙ୍କ ବିନାନୁମତରେ ତାହାର ବଣ୍ଟନ କରାଯିବ ନାହିଁ । ଏହାକୁ ମୁଁ 'ସୁଲଭ ଗ୍ରାମଦାନ' ବୋଲି କହୁଛି । ଏହା ବ୍ୟାପକ ହେଲେ ଗ୍ରାମପଞ୍ଚାୟତର ଭିତ୍ତିର ମଧ୍ୟ ମଜବୁତ ହେବ ବୋଲି ସେ ମତପ୍ରକାଶ କଲେ । ସେଥିପାଇଁ ସରକାରଙ୍କୁ ମୋର ମଧ୍ୟ ପ୍ରସ୍ତାବ ଯେ, ଯଦି ସରକାର ମନେକରୁଥାଆନ୍ତି ଯେ, ଗ୍ରାମଦାନ ଦ୍ୱାରା ଗ୍ରାମପଞ୍ଚାୟତର ଭିତ୍ତିର ଶକ୍ତିଶାଳୀ ହେଉଛି, ତାହାହେଲେ ଗ୍ରାମଦାନ ଗାଁର ଶ୍ରେଷ୍ଠ ଶ୍ରେଷ୍ଠ ଗ୍ରାମସଭାମାନଙ୍କୁ ସେ ଗ୍ରାମପଞ୍ଚାୟତର ଅଧିକାର ଦେଇଦିଅନ୍ତୁ । ତେବେ ଯାଇ ଲୋକେ ଅନୁଭବ କରିବେ ଯେ, ସରକାର ସେମାନଙ୍କ ପ୍ରତି ଅନୁକୂଳ ରହିଛି ।

**ସୁଲଭ ଗ୍ରାମଦାନ—**

ଆଗେ ଯେତେବେଳେ ଗ୍ରାମଦାନ କଥା ଆମେ କହୁଥିଲୁ ସେତେବେଳେ ଅନେକେ ଭୟ କରୁଥିଲେ । ଓଡ଼ିଶାର ପୂର୍ବତନ ଗଣତନ୍ତ୍ରଦଳ ମନେ କରୁଥିଲେ ଯେ; ଆଜି ଏମାନେ ଅଳ୍ପ କିଛି

ଜମି ମାଗୁଛନ୍ତି ତାଙ୍କୁ ସବୁଡକ ନେଇଯିବେ; ସେଇଠୁ କୋଠଗୃହ ଚଳେଇବେ । ଫଳରେ ସଧାରଣ ଲୋକ ହାତରେ ବ୍ୟକ୍ତିଗତ ମାଲକାନା ଥିବାଯୋଗୁଁ ଅଭିକ୍ରମର ସହିତ ସେ ଯେଉଁଳି ଜମି ଉପରେ କାମ କରେ, ତାହା କୋଠଗୃହରେ ରହିବ ନାହିଁ ଓ ଦେଶର ଉତ୍ପାଦନ କମିଯିବ । ସେମାନଙ୍କର ଏ ପ୍ରକାରର ଆକ୍ଷେପ କିଛି ଅମୂଳକ କଥା ନୁହେଁ । କାରଣ ଅଜ ଏପରି ଘଟୁଛି, ଉତ୍ପାଦନ ବୃଦ୍ଧି ଓ ବ୍ୟକ୍ତିଗତ ଅଭିକ୍ରମ ବଜାୟ ରହିବା—ଏ ଦୁଇ କଥାର ପ୍ରମାଣ ଏପର୍ଯ୍ୟନ୍ତ କୋଠଗୃହ ଭିତରୁ ମିଳିନାହିଁ ।

ମୁଁ ତେଣୁ ଏବେ ପ୍ରସ୍ତାବ ରଖିଛି ଯେ, ଗାଁରେ ପ୍ରେମଭାବ ସୃଷ୍ଟି କରିବା ଲାଗି ଗ୍ରାମଦାନରେ ଲୋକେ ନିଜ ଚାଷ ଜମିରୁ କୋଡ଼ିଏ ଭାଗରୁ ଭାଗେ ଦିଅନ୍ତୁ । ପୁଣି ଗ୍ରାମସଭାର ଆର୍ଥିକ ବଳ ବଢ଼େଇବା ଲାଗି ପ୍ରତିବର୍ଷ ନିଜ ଫସଲର ଗୋଟାଏ ନିର୍ଦ୍ଦିଷ୍ଟ ଅଂଶ ସେମାନେ ଦାନ କରନ୍ତୁ । ବାକି ଅଂଶ ସେମାନଙ୍କ ହାତରେ ରହୁ । ପୂର୍ବେ ଯେମିତି ଚାଷବାସ ସେମାନେ କରୁଥିଲେ, ଏବେ ସେମାନେ ସେଇଭଳି କରନ୍ତୁ । ସେଥିରେ କାହାର ବ୍ୟକ୍ତିଗତ ଅଭିକ୍ରମ ଊଣା ହେବ ନାହିଁ । ପୂର୍ବରୁ କଂଗ୍ରେସ ଓ ଜନସଂଘ ପ୍ରଭୃତି ଦଳ ଯେଉଁ ଆକ୍ଷେପ କରୁଥିଲେ, ସେଥିରୁ ଏବେ ଆମେ ତା'ର ଜବାବ ଦେଉଛୁ ।

## ଗ୍ରାମଦାନ ଓ ବ୍ୟକ୍ତିଗତ ଉଦ୍ୟମ—

ଆଜି ଗ୍ରାମଦାନ, କିଛି ଦିନପରେ ଆଇନ ଓ ଶେଷରେ କୋଠଗୃହ—ସେମାନଙ୍କର ଏଭଳି ଆକ୍ଷେପରେ ନିଶ୍ଚୟ କିଛି ତଥ୍ୟ ଥିଲା । ସର୍ବୋଦୟର ଦୃଷ୍ଟିକୋଣ ହେଉଛି ଯେ—ପ୍ରତିପକ୍ଷର କଥାରେ ଯଦି କିଛି ତଥ୍ୟ ଥାଏ, ତାକୁ ଗ୍ରହଣ କରିନେବା ଓ ସେହି ଅନୁସାରେ ନିଜକୁ ସଂଶୋଧନ କରିବା । ସେଥିପାଇଁ ଏବେ ଆମେ

ମାନଙ୍କୁ ସ୍ୱୀକାର କରୁଛନ୍ତି । ଯଦି ଗଣତନ୍ତ୍ର (ପ୍ରଜାତନ୍ତ୍ର) ବାଲାଙ୍କ ସଙ୍ଗେ ଏଥର ଓଡ଼ିଶାରେ ସାମ୍ନା ହୁଏ, ତାହାହେଲେ ମୁଁ ସେମାନଙ୍କୁ ଅନୁରୋଧ କରିବି ଯେ, "ଆପଣଙ୍କ ପାର୍ଟିକୁ ଏଥର ପୁରୁଣା ବିନୋବା ଆସି ନାହିଁ, ନୂଆ ବିନୋବା ଆସିଛି । ଏଣୁ ଆପଣମାନେ ମଧ୍ୟ ଏଥର ଟିକେ ନୂତନ ହୁଅନ୍ତୁ ।" କଂଗ୍ରେସ କଥା କ'ଣ କହୁଛି ? ତାହା ତ ଗ୍ରାମଦାନର ନୀତିକୁ ଗ୍ରହଣ କରିଛି । ତଥାପି ଅନେକଙ୍କ ମନରେ ସଂଶୟ ରହୁଛି ଯେ, ଗ୍ରାମଦାନଦ୍ୱାରା ବ୍ୟକ୍ତିଗତ ଅଭିକ୍ରମ ନଷ୍ଟ ହୋଇଯିବ ! ମୋର ମନେ ହୁଏ ସୁଲଭ ଗ୍ରାମଦାନରେ ତାଙ୍କ ଜମି ତାଙ୍କ ପାଖେ ରହୁଛି, କେହି ତାହାକୁ ନେଇ ଯାଉନାହିଁ । ଗ୍ରାମଦାନର ପୂର୍ବ ଅବସ୍ଥା ସହିତ ପର ଅବସ୍ଥାର ତଫାତ୍ କେବଳ ଏତିକି ଯେ, ଜମିର ମାଲିକାନା ମାଲିକଙ୍କ ହାତରୁ ଯାଉଛି । ଆଖର ଜମି ଉପରେ ମାଲିକାନା ରଖିବାର ଅର୍ଥ କ'ଣ । ତାହାର ଅର୍ଥ ହେଉଛି ଏଇଆ ଯେ, ଦରକାର ହେଲେ ଜମିକୁ ବିକି କରି ହେବ ବା ବନ୍ଧକ ରଖାଯାଇ ପାରିବ । ଅର୍ଥର ସୁବିଧାରେ ସେମାନେ ଜମିକୁ ହରେଇ ବସିବେ । ଏତିକି ଥିବା ଯୋଗୁଁ ଆଜି ଗାଁ ଜମି ଗାଁ ବାହାରକୁ ଚାଲି ଯାଉଛି ଓ ଜମିର ମାଲିକ ସହରରେ ଘର କରି ରହୁଛି । ଏଣୁ ଗ୍ରାମଦାନ ହେଲେ ଭୂମି ମାଲିକଙ୍କର ଆକ୍ରମଣ ଉଣା ପଡ଼ିବ ନାହିଁ କିମ୍ବା ଉତ୍ପାଦନ କମିବ ନାହିଁ । କାରଣ ଉତ୍ପାଦନ ବୃଦ୍ଧିରେ ମୂଲିଆର ମଧ୍ୟ ଏକ ବିଶେଷ ଭୂମିକା ରହୁଛି । ଆଜି ତ ଆଠଘଣ୍ଟା ଖଟିବାକୁ ଯାଇ ମୂଲିଆ ଖୁବ୍ ବେଶି ହେଲେ ଚାରିଘଣ୍ଟାର ମିହନ୍ତ କରୁଛି । ଭୂମି ଉପରେ କିଛି ସ୍ୱାର୍ଥ ନାହିଁ । କିନ୍ତୁ ଯେତେ-ବେଳେ ତାକୁ ଜମି ମିଳିବ, ସେତେବେଳେ ସେ ମାଲିକଙ୍କ ଭଳିରେ ମନଲଗାଇ କାମ କରିବ ଓ ୧୯ଗୁଣ ଜମିରୁ ବୋଡ଼ିଏ

ଗୁଣରେ ଫସଲ ଫଳୋଇବ । ଏଣୁ ଗ୍ରାମଦାନ ହେଉଛି ତାହାର ଯଥାର୍ଥ ପ୍ରତ୍ୟୁତ୍ତର ।

ଗ୍ରାମପଞ୍ଚାୟତର ବିଚାର ଭଲ । ମୁଁ ସ୍ୱୀକାର କରୁଛି ଯେ, ବର୍ତ୍ତମାନ ପରିସ୍ଥିତିରେ ଏହାର ପ୍ରୟୋଗ କଲେ ନାନାବିଧ କ୍ଷତି ହେବ । ତଥାପି ମୁଁ ଏହାକୁ ପସନ୍ଦ କରିବ । ସ୍ୱରାଜର ଅର୍ଥ ଗାନ୍ଧୀଜୀ କହୁଥିଲେ ଯେ, ଭୁଲ କରିବାର ଅଧିକାର । ସ୍ୱରାଜର ପରିଚାଳନା କରୁ କରୁ ଅନେକ ଭୁଲ ଭଟକା ଆମ ଦ୍ୱାରା ହେଲା । ମାତ୍ର ଆମର ବୁଦ୍ଧିର ବିକାଶ ତ ଘଟିବ । ସେହିପରି ଗ୍ରାମପଞ୍ଚାୟତ ଗଢ଼ାଯିବା ଯୋଗୁଁ ଯେଉଁ ହାନି ଘଟୁଛି, ତାକୁ ଅନୁଭବ ଓ ଅଭିଜ୍ଞତା ବଳରେ ଟାଳିବାର ଚେଷ୍ଟା ଆମେ କରିବା ।

ଓଡ଼ିଶା ହେଲା ଏକ ଅନୁନ୍ନତ ପ୍ରଦେଶ । ତେଣୁ ସେଥିପାଇଁ ହିଁ ଏଠି ଗ୍ରାମଦାନର ଅଧିକ ଆବଶ୍ୟକତା ରହିଛି । ଯଦି ଗାଁର ଶକ୍ତି ଏକତ୍ର ଠୁଳ ନହୁଏ, ତେବେ ଗ୍ରାମର ଉନ୍ନତି ହେବ କିପରି ? ଏଠି ତ ଗାଁ ସବୁ ଛୋଟ । ଉପକୂଳ ଅଞ୍ଚଳକୁ ଛାଡ଼ିଦେଲେ ବାକି ଅଞ୍ଚଳର ଜମି ଖୁବ୍ ଉର୍ବର ନୁହେଁ । ଏଣୁ ଏଠି ଯଦି ଲୋକେ ପରସ୍ପର ପାଇଁ ତ୍ୟାଗ ନ କରିବେ, ତେବେ ଚଳିବ କିପରି ଓ ଗାଁମାନଙ୍କର ଉନ୍ନତି କେମିତି ସମ୍ଭବ ହେବ ? ଆଜି ଯେଉଁସବୁ ବୈଜ୍ଞାନିକ ପ୍ରକ୍ରିୟା ବାହାରିଲାଣି, ତା'ର ଉପଯୋଗ ତ ଜଣେ ଲୋକଙ୍କ ପ୍ରଚେଷ୍ଟାରେ ସମ୍ଭବ ହେବ ନାହିଁ । ଏଣୁ କେବଳ ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖିଲେ ସୁଦ୍ଧା ଗାଁ ଲୋକେ ପରସ୍ପରଠାରୁ ଦୂରେଇ ରହିଲେ ଭୁଲ ହେବ । ଏଣୁ ସମୁଦାୟ ଗାଁକୁ ଏକ ହେବାକୁ ପଡ଼ିବ ଓ ପରିବାରର ଭାବନା ସୃଷ୍ଟି କରିବାକୁ ହେବ ।

ବିଜ୍ଞାନ ଦୁନିଆକୁ ଯୋଡ଼ିଦେବ—

ବିଜ୍ଞାନର ସ୍ତରରେ ଭବିଷ୍ୟତରେ ଦୁନିଆ ମଧ୍ୟ ଏକ ହୋଇଯିବ । ବିଶ୍ୱ ଅଦାଲତ ଓ ବିଶ୍ୱରାଜ୍ୟର ପ୍ରତିଷ୍ଠା ହେବ । ତଳେ ଗ୍ରାମପଞ୍ଚାୟତ ଓ ଗ୍ରାମପରିବାର ସାଙ୍ଗକୁ ଉପରେ ରହିବ ବିଶ୍ୱରାଜ୍ୟ ଓ ବିଶ୍ୱ ଅଦାଲତ । ରାଷ୍ଟ୍ର, ଜାତି ବା କୁଟୁମ୍ବର ଆଜି ଯେଉଁ ପୁରୁଣାକାଳିଆ ସଙ୍କୁଚିତ ଆତ୍ମାଭିମାନ ସବୁ ଅଛି, ତାହା ଲୋପ ପାଇଯିବ । ଉପର ସ୍ତରରେ ଦେଶ । ଦେଶ ଭିତରେ ଦଳର ଭେଦ, ପୁଣି ତଳସ୍ତରରେ—ଗାଁ ରେ ଜାତିପାତିର ଭେଦ ଆଜି ଯେପରି ଅଛି ଯଦି ସେହିପରି ରହିଥିବ, ତାହାହେଲେ ବିଜ୍ଞାନରୁ ଲାଭ ସମସ୍ତଙ୍କୁ ମିଳି ପାରିବ ନାହିଁ । ଏଣୁ ଆମେ ଚାହୁଁ ଯେ, ବିଜ୍ଞାନର ଲାଭ ସମସ୍ତଙ୍କୁ ମିଳୁ । ଉପର ସ୍ତରରେ ଥିବା ଭେଦ ଓ ବିଦ୍ୱେଷର ସମାଧାନର କଥା ତ ଆମ ହାତରେ ନାହିଁ । ସେ କଥା ଭଗବାନ ବୁଝିବେ । ମାତ୍ର ତଳସ୍ତରର ସମାଧାନ କଥା ଆମ ହାତରେ ରହିଛି । ଭଗବାନ ଆମକୁ ବୁଦ୍ଧି ଦେଉଛନ୍ତି, ସେଥିଲାଗି ରୁଷର ପ୍ରଧାନମନ୍ତ୍ରୀ ଖ୍ରୁଶ୍ଚେଭ ଓ ଆମେରିକାର ରାଷ୍ଟ୍ରପତି କେନେଡ଼ି ଆଜି ପରସ୍ପରର ଅଧିକ ନିକଟକୁ ଆସୁଛନ୍ତି । ଏଣୁ ତଳସ୍ତରରେ ଆମେ ଗାଁବାଲା ମଧ୍ୟ ପରସ୍ପରର ନିକଟବର୍ତ୍ତୀ ହେବା ଉଚିତ । ତେବେ ଯାଇ ସୁଖୀ ଦୁନିଆ ସାଙ୍ଗକୁ ସୁଖୀ ଗାଁ ଆମେ ଗଢ଼ି ପାରିବା । ଆମର ଅନୁନ୍ନତ ଦେଶ ଉନ୍ନତି କରିବ ।

( ବାଲେଶ୍ୱର ଜିଲ୍ଲାର ଜିଲ୍ଲା ପରିଷଦ, ପଞ୍ଚାୟତ ସମିତି, ଗ୍ରାମପଞ୍ଚାୟତମାନଙ୍କର ସଦସ୍ୟ, ମୁଖ୍ୟ ଏବଂ ବ୍ଲକ ଉନ୍ନୟନ ଅଫିସରମାନଙ୍କ ଆଗରେ ପ୍ରଦତ୍ତ ଭାଷଣ, ତା ୩୧-୮-୬୩ )

---

## ଜ୍ଞାନଶକ୍ତି ବଢ଼ିବା ସଙ୍ଗେ ସଙ୍ଗେ ପ୍ରେମଶକ୍ତି ବଢ଼ିବା ମଧ୍ୟ ଆବଶ୍ୟକ

### ଆଗ ଅପେକ୍ଷା ଆଜି ବୁଦ୍ଧି ବେଶୀ—

ଏଥର ମୁଁ ଦ୍ୱିତୀୟ ଥର ପାଇଁ ଓଡ଼ିଶାକୁ ଆସିଛି । ପ୍ରଥମ-ଥରର ଯାତ୍ରାରେ ବହୁତରେ ବୀଜ ଏଠାରେ ବୁଣିଥିଲି । ଏବେ ତାକୁ କାଟିବାକୁ ଆସିଛି । ଏଣୁ ଏଠି ପୂର୍ଣ୍ଣ କାମ ହେବ ବୋଲି ମୁଁ ଆଶା କରୁଛି । ଗତ ଅଗଷ୍ଟ ତେର ତାରିଖରେ ପ୍ରବେଶ କରିଥିଲି । ଆଜି ସେପ୍ଟେମ୍ବର ବାର ତାରିଖ ହେଲଣି । ଏହି ମାସକ ଭିତରେ ଓଡ଼ିଶା ପ୍ରଦେଶରେ ଅଢ଼େଇ ଶହ ଗ୍ରାମ ଗ୍ରାମଦାନ ହୋଇ ସାରିଛି । ଏହା ଏକ ଭଲ ଘଟଣା । ଏଣୁ ମୁଁ ଭାବୁଛି ଏଠାରେ ସାଧାରଣ ନାଗରିକଙ୍କ ଆଗରେ ଗ୍ରାମଦାନର ମୂଳସ୍ୱରୂପ ବିଷୟରେ କିଛି ବିଚାର ରଖିବା ଆବଶ୍ୟକ ।

ବିଜ୍ଞାନ ଆଜି ଦୁନିଆକୁ ଛୋଟ କରି ଦେଇଛି । ସେଥିପାଇଁ ପୃଥିବୀରେ ଛୋଟ ଛୋଟ ରାଷ୍ଟ୍ରମାନେ ଦୁଇ ତିନୋଟି କରି ଏକାଠି ହୋଇ ନିଜକୁ ବଡ଼ କରି ନେଉଛନ୍ତି । ମଧ୍ୟପ୍ରାଚ୍ୟରେ ଆରବ ରାଷ୍ଟ୍ରସଂଘ ଏବଂ ପୂର୍ବରେ ମାଳୟ ଓ ବୋର୍ଣ୍ଣିଓ ଆଦି ମିଶି ମାଲେସିଆ ଗଠନ କରାଯାଇଛି । ଏହିରୂପେ ଏକତ୍ର ହେବାର ପ୍ରବୃତ୍ତି ଦୁନିଆରେ ବଢ଼ି ଚାଲିଛି । ଏହା ଏକ ଭଲ ପ୍ରବୃତ୍ତି । କିନ୍ତୁ ଏ ପ୍ରବୃତ୍ତି ଦେଖା ଦେଇଛି କାହିଁକି ? ଏ ପ୍ରବୃତ୍ତି ଦେଖା ଦେବାର କାରଣ ହେଲା ଯେ, ବିଜ୍ଞାନ ଆଜି ରାଷ୍ଟ୍ରମାନଙ୍କୁ ପରସ୍ପରର

ଅକାଟବର୍ତ୍ତୀ ହେବାପାଇଁ ବାଧ କରୁଛି । ଯୁଗ ଥିଲା—ଯେତେବେଳେ ଭାରତକୁ ଆସିବା ପାଇଁ ଇଂରେଜମାନଙ୍କୁ ଆଠଦଶମାସ ସମୟ ଲାଗୁଥିଲା । ତା'ପରେ ଷ୍ଟିମର ବାହାରିଲା ତ ପନ୍ଦରଦିନ ସମୟ ଲାଗିଲା । ମାତ୍ର ଏବେ ତ ଉଡ଼ାଜାହାଜରେ ଇଂଲଣ୍ଡରୁ ଭାରତକୁ ଆସିବାକୁ ଦଶପନ୍ଦର ଘଣ୍ଟା ଲାଗୁଛି । ଉଡ଼ାଜାହାଜର ଉତ୍ପାଦନ ବଢ଼ି ବଢ଼ି ଚାଲୁଛି । ଦୁନିଆସାରା ଥରେ ବୁଲି ଆସିବା ବର୍ତ୍ତମାନ ଘଣ୍ଟାରେ କେଇ ଘଣ୍ଟା ମାତ୍ରର କଥା ହୋଇଗଲାଣି । କାରଣ ମଣିଷର ବୁଦ୍ଧି ଉତ୍ତରୋତ୍ତର ବିକାଶ ଲାଭକରି ଚାଲିଛି । ଗୋଟିଏ ସ୍କୁଲପିଲା ଯେତେ କଥାର ଜ୍ଞାନ ଆଜି ପାଇସାରିଲାଣି, ପୂର୍ବକାଳରେ ବଡ଼ ବଡ଼ ପଣ୍ଡିତମାନଙ୍କୁ ସୁଦ୍ଧା ସେ କଥା ଜଣା ନ ଥିଲା । ଆକବର ଥିଲେ ଦିଲ୍ଲୀର ପ୍ରସିଦ୍ଧ ସମ୍ରାଟ । ଯେତେବେଳେ ଇଷ୍ଟ ଇଣ୍ଡିଆ କମ୍ପାନୀର ଲୋକେ ତାଙ୍କ ଦରବାରକୁ ଆସିଲେ, ସେତେବେଳେ ଯାଇ ସେ ଜାଣିଲେ ଯେ, ଇଂଲଣ୍ଡ ବୋଲି କେଉଁଠି ଏକ ଦେଶ ଅଛି । ଏତେ ବଡ଼ ସମ୍ରାଟ୍ ! ଏତେ ତାଙ୍କର ଜ୍ଞାନ । ତାହାସତ୍ତ୍ୱେ ଇଂଲଣ୍ଡ ବୋଲି ଯେ ଗୋଟାଏ ଦେଶ ଅଛି ଏକଥା ତାଙ୍କୁ ଜଣା ନ ଥିଲା । କିନ୍ତୁ ଆଜି ? ଗୋଟିଏ ଛୋଟ ପିଲାଠାରେ ସୁଦ୍ଧା ଦୁନିଆର ଜ୍ଞାନ ରହିଛି । ଯେକୌଣସି ଖବର-କାଗଜ ଖୋଲନ୍ତୁ, ସେଥିରେ ଆପଣ ରୁଷ୍, ଆମେରିକା, ଇଂଲଣ୍ଡ ଫ୍ରାନ୍ସ୍ ଆଦି ପୃଥିବୀର ନାନା ଦେଶର ଖବର ବଡ଼ ବଡ଼ ଅକ୍ଷରରେ ପାଇବେ । ଆଜି ଭିଏତ୍‌ନାମରେ ବୌଦ୍ଧମାନଙ୍କ ଉପରେ କ'ଣ ଘଟୁଛି, ତା'ର ଖବର ଆମେ ଘରେ ବସି ଏଠି ପାଉଛୁ । ଏହିରୂପେ ସବୁ ଦୁନିଆର ସମାଚାର ଆମକୁ ପ୍ରତିଦିନ ମିଳି ଚାଲିଛି ଓ ଆମର ବୁଦ୍ଧି ଦିନକୁ ଦିନ ବଢ଼ି ବଢ଼ି ଚାଲିଛି ।

ହୃଦୟକୁ ବଡ଼ କର—

ବୁଦ୍ଧି ସାଙ୍ଗକୁ ହୃଦୟ ମଧ୍ୟ ବଡ଼ ହେବା ଦରକାର । ତା' ନହେଲେ ଯଦି ବୁଦ୍ଧି ବଡ଼ ହେବା ସଙ୍ଗକୁ ହୃଦୟ ଛୋଟ ହୋଇଯିବ ତେବେ ଭୀଷଣ ପରିସ୍ଥିତି ଘଟିବ । ମନରେ ଦୁନିଆର ସମସ୍ତଙ୍କ ପାଇଁ ଭୟ ଜନ୍ମିବ । ସବୁବେଳେ ଲାଗିବ ଯେ, ସତେ ଯେମିତି କିଏ ଆକ୍ରମଣ କରିବାକୁ ଆସୁଛି । ଯଦି ଶତ୍ରୁ ଦଶହଜାର ମାଇଲ ଦୂରରେ ଥିବ, ଆମେ ମନେକରିବୁ ଯେ ହେଇ ! ଶତ୍ରୁ ଖୁବ୍ ନିକଟେଇ ଆସିଲଣି । ମାତ୍ର ଦଶହଜାର ମାଇଲ ଦୂରରେ ଅଛି । ପୂର୍ବେ କିନ୍ତୁ ଏ କଥା ନ ଥିଲା । ପୂର୍ବେ ପଚାଶ ମାଇଲ ଦୂରରେ କେହି ଥିଲେ ମଧ୍ୟ ଖୁବ୍ ଦୂରରେ ଅଛି ବୋଲି ମନେ ହେଉଥିଲା । ଆଜି ଯେତେବେଳେ ପ୍ରତି ମୁହୂର୍ତ୍ତରେ ଆମକୁ ଦୁନିଆସାରା ଖବର ମିଳୁଛି, ଯଦି ସେତେବେଳେ ଆମ ଭିତରେ ସନ୍ଦେହ ଏବଂ ଅବିଶ୍ୱାସ ରହିଥିବ, ତାହାହେଲେ ପରସ୍ପର ପ୍ରତି ଡର ବଢ଼ିଥିବ ।

ଭାରତ ଏବଂ ପାକିସ୍ତାନ ଉଭୟ ଦେଶର ମଝିରେ ସୀମାରେଖା ରହିଛି । ମନେକରନ୍ତୁ ପାକିସ୍ତାନର ଜଣେ ଲୋକ କୌଣସି ଏକ ଭାରତୀୟ କୃଷୀର ଧାନ କ୍ଷେତରୁ ଧାନ କାଟିନେଲା । ତାହାହେଲେ ଖବରକାଗଜରେ ବଡ଼ ବଡ଼ ଶିରୋନାମା ସହିତ ପ୍ରକାଶ ପାଇବ ଯେ ପାକିସ୍ତାନର ଲୋକେ ଭାରତୀୟ କୃଷୀଙ୍କ ଫସଲକୁ ଆସି ଲୁଣ୍ଠନ କରିନେଲେ । ପ୍ରକୃତ ପକ୍ଷେ ଏ ଝଗଡ଼ା ଦୁଇଜଣ ବ୍ୟକ୍ତିବିଶେଷଙ୍କର ଝଗଡ଼ା । କିନ୍ତୁ ଭାରତସାରା ସବୁ ଖବରକାଗଜରେ ବଡ଼ ବଡ଼ ଶିରୋନାମା ନେଇ ଏକଥା ପ୍ରକାଶ ପାଇବ ଏବଂ ଭାରତ ପାର୍ଲିଆମେଣ୍ଟରେ ପ୍ରଶ୍ନ ଉଠିବ ଯେ, ଭାରତ ସରକାର ନିଜ ଦେଶର ସୀମାନ୍ତକୁ ସୁଦୃଢ଼ କରିବାପାଇଁ ବ୍ୟବସ୍ଥା

କରୁନାହାଁ କାହିଁକି ? ପରସ୍ପର ଭିତରେ ବଢ଼ି ଚାଲିଥିବା ଭେଦର ଏହା ହେଉଛି ଏକ ନମୁନା ।

ଏ ଯେଉଁ ଘଡ଼ି ମୁଁ ବ୍ୟବହାର କରୁଛି, ତାହା ସୁଇଜରଲାଣ୍ଡରୁ ଆସିଛି । ଏ ଯେଉଁ ଫାଉଣ୍ଟେନ ପେନ ମୁଁ ଧରିଛି, ତାହା ଇଂଲଣ୍ଡ ବା ଜାପାନରୁ ହୁଏତ ଆସିଥିବ । ମୁଁ ଜାଣେନା—ମୋର ଏ ଚଶମା କେଉଁଠିକାର ତିଆରି । କିନ୍ତୁ ତାହା ମଧ୍ୟ ପୃଥିବୀର କୌଣସି ଏକ ଦେଶରୁ ଆସିଥିବା ସମ୍ଭବ । ଏହିରୂପେ ସବୁ ଦୁନିଆର ଜିନିଷ ଆମେ ବ୍ୟବହାର କରୁଛୁ । ଏ ଦୁନିଆଟା ଆମପାଇଁ ଓ ଦୁନିଆ ପାଇଁ ଆମେ । ଆମକୁ ଯେତେବେଳେ ପୃଥିବୀର ବିଭିନ୍ନ ଦେଶ ସହିତ ବ୍ୟବସାୟ କରିବାକୁ ଓ ବିଭିନ୍ନ ଦେଶର ଜିନିଷ ବ୍ୟବହାର କରିବାକୁ ପଡ଼ୁଛି, ସେତେବେଳେ ପୃଥିବୀର ଅନ୍ୟମାନଙ୍କ ସହିତ ଆମର ହୃଦୟ ଯୋଡ଼ିଦେବା ଉଚିତ ଏବଂ ହୃଦୟ ବିଶାଳ ହେବା ଉଚିତ । ସମସ୍ତ ଦୁନିଆର ଜିନିଷ ଆମେ ଉପଭୋଗ କରୁଛୁ, ଅଥଚ ଦୁନିଆକୁ ପ୍ରେମ କରିବୁ ନାହିଁ ? ଏହା ଯଦି ନ କରୁ ତେବେ ଦୁନିଆର ଜିନିଷ ବ୍ୟବହାର କରିବାର ଆମର କି ଅଧିକାର ଅଛି ?

ଆଜ ଭାରତକୁ ଆମେରିକାରୁ ଗହମ ଆସୁଛି । ଏ ବ୍ୟବସ୍ଥା ତ ଭଲ ନୁହେଁ । ତଥାପି ପରଠାରୁ ଗହମ ଆଣିବା ପରିସ୍ଥିତିରେ ଆମେ ଅଛୁ । ଯଦି ଏଠି ଦୁର୍ଭିକ୍ଷ ପଡ଼େ, ତାହାହେଲେ ଦୁନିଆର ଚାରିଆଡ଼ୁ ଖାଦ୍ୟଦ୍ରବ୍ୟ ଆସିଯିବ ।

ଅଳ୍ପ ଜ୍ଞାନକୁ ଅଳ୍ପ ପ୍ରେମ;

ବେଶୀ ଜ୍ଞାନକୁ ବେଶୀ ପ୍ରେମ—

ଇଂଲଣ୍ଡରେ ଗୋଟିଏ ଅନୁଷ୍ଠାନ ଅଛି । ତା'ର ନାମ କ୍ଷୁଧା ନିବାରଣ ମଣ୍ଡଳ ବା **war on want** । ଗ୍ରାମଦାନ ଗାଁକୁ

ସାହାଯ୍ୟ କରିବାପାଇଁ ସେ ଅନୁଷ୍ଠାନ ପଇସା ସଂଗ୍ରହ କରି ପଠାଉଛନ୍ତି । ଏ ପଇସା କୌଣସି ସରକାରର ନୁହେଁ । ଏହା ସାଧାରଣ ନାଗରିକ ମାନଙ୍କର ପଇସା । ସେମାନେ ଯେଉଁ ବେଳେ ଜାଣିଲେ ଯେ ଭାରତବର୍ଷରେ ଗ୍ରାମଦାନ କାମ ଚାଲିଛି, ଗରିବ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଭୂଦାନ ଆରମ୍ଭ ହୋଇଛି ଓ ଲୋକେ ଶ୍ରଦ୍ଧାରେ ଭୂମିଦାନ ଦେଉଛନ୍ତି, ସେତେବେଳେ ସେମାନେ ସର୍ବସେବା ସଂଘ ପାଖକୁ ଏଥିପାଇଁ ଅର୍ଥ ସାହାଯ୍ୟ ପଠାଇଲେ । ମାତ୍ର ସେମାନଙ୍କଠାରେ ଏ ଭାବନା ସୃଷ୍ଟି ହେଲା କପରି ?

ଆଉ ଏକ ଉଦାହରଣ ନିଅନ୍ତୁ । ଜର୍ମାନୀର କେତେକ କଲେଜ ଛାତ୍ର ଶୁଣିଲେ ଯେ, ଭାରତରେ ଗରିବ ଲୋକଙ୍କ ପାଇଁ ଭୂଦାନ ଗ୍ରାମଦାନର ଆନ୍ଦୋଳନ ଚାଲିଛି । ଏଥିରେ ସାହାଯ୍ୟ ପହଞ୍ଚାଇବାକୁ ସେମାନେ ସାତଦିନରେ ବଖତେ ଖାଇବା ଛାଡ଼ିଦେଲେ । ଦିନରେ ତିନିଥର ଖାଇଲେ ସାତଦିନେ ଏକୋଇଶି ଥର ଖାଇବା କଥା । ଏଥିଭିତରୁ ଗୋଟିଏ ବଖତର ପଇସା ବଞ୍ଚାଇ ସେମାନେ ଏଠିକା ଗ୍ରାମଦାନୀ ଗାଁର ଲୋକଙ୍କ ପାଖକୁ ପଠେଇଛନ୍ତି । ତାଙ୍କର ସ୍ଲୋଗାନ ହେଉଛି Miss a meal ବା ଥରକର ଖୋରାକ ଛାଡ଼ । ଆଚ୍ଛା କହିଲ ଭଲା—ଜର୍ମାନୀର କୌଣସି ପିଲାର କ'ଣ ଏଠା ଭୂମିହୀନଙ୍କୁ ସାହାଯ୍ୟ କରିବାର ପ୍ରେରଣା ପୂର୍ବରୁ କେବେ ହେଉଥିଲା ? ମାତ୍ର ବିଜ୍ଞାନ ବଳରେ ଆଜି ତାହା ସମ୍ଭବ ହୋଇଛି । ବିଭିନ୍ନ ଦେଶର ସାଧାରଣ ଲୋକଙ୍କ ଭିତରେ ଏପରି ସଂବେଦନଶୀଳ ମନୋଭାବ ତ ରହିଛି । କିନ୍ତୁ ଯେଉଁମାନେ ସେ ଦେଶମାନଙ୍କରେ ନିଜ ହାତକୁ କ୍ଷମତା ନେଇଛନ୍ତି, ସେମାନଙ୍କ ଭିତରେ ପରସ୍ପର ପ୍ରତି ସଂକୋଚ, ଅବିଶ୍ୱାସ ଏବଂ ଭୟ ଦୂର ହୋଇନାହିଁ । ଅବଶ୍ୟ ବିଶ୍ୱାସର ପ୍ରଥମ ନିଦର୍ଶନସ୍ୱରୂପ ଏବେ

ରୁଷ୍ ଏବଂ ଆମେରିକା ଭିତରେ ଆଂଶିକ ନିରସ୍ତ୍ରୀକରଣର ଚୁକ୍ତି ସ୍ୱାକ୍ଷରିତ ହୋଇଛି । ଦୁନିଆରୁ ଦୁଃଖ, ଦାରିଦ୍ର୍ୟ, ଦୁର୍ଭିକ୍ଷ ଲୋପ କରିବା ଦିଗରେ ଏହା ନିଶ୍ଚୟ ଏକ ପଦକ୍ଷେପସ୍ୱରୂପ ହେବ । ଏହିପରି ଭାବରେ ଆଗେଇ ଯାଉଯାଉ ହୁଏତ ଦିନ ଆସିବ— ଯେତେବେଳେ ଉଭୟ ଦେଶ ମିଶି ଦୁଃଖୀ ଓ ଦାରିଦ୍ର୍ୟପୀଡ଼ିତ ଜନତାଙ୍କୁ ସାହାଯ୍ୟ କରିବେ । ଭାବନା ଏହିରୂପେ ବ୍ୟାପକ ହେବା [illegible] । ଯଦି ଭାବନା ବ୍ୟାପକ ନ ହୁଏ, ତା'ହେଲେ ବିକାଶଶୀଳ ବିଜ୍ଞାନର ଯୁଗରେ ତିଷ୍ଠି ହେବ କିପରି ? ସହଯୋଗ ଏବଂ ସାହାଯ୍ୟର ମନୋଭାବ ବଦଳରେ ରାଗ ଦ୍ୱେଷର ଭାବନା ବଢ଼ିଲେ ଶେଷରେ ମଣିଷ ପାଇଁ ସଂହାରର ବିପତ୍ତି ରହୁଛି । କୁହାଯାଇଥାଏ ଯେ ଚୀନ୍ ଭାରତ ଏବଂ ରୁଷ ଆମେରିକା ଭିତରେ ଝଗଡ଼ା ଚାଲିଛି । ଏହା ଭୁଲ କଥା । ମୋ ବିଚାରରେ ଏହା ଚୀନ, ଭାରତ କିମ୍ବା ରୁଷ୍ ଆମେରିକା ଭିତରର ଝଗଡ଼ା ନୁହେଁ । ଏହା ହେଉଛି ମଣିଷର ବୁଦ୍ଧି ଓ ହୃଦୟର ଝଗଡ଼ା । ମଣିଷ ଭିତରେ ବୁଦ୍ଧି ଏବଂ ହୃଦୟ ମଧ୍ୟରେ ଛୋଟ ଆକାରରେ ବ୍ୟକ୍ତି ସ୍ତରରେ ଯେଉଁ ଝଗଡ଼ା ଚାଲୁଛି, ତାହାହିଁ ବ୍ୟାପକ ସ୍ତରରେ ବଡ଼ ଆକାରରେ ଦୁଇ ଦେଶର ଝଗଡ଼ାରୂପେ ବାହାରକୁ ଦିଶୁଛି । ଏ କଥା ଭଲରୂପେ ବୁଝି ରଖିବା ଆବଶ୍ୟକ ଯେ, ମାନବର ବିକାଶ ଖାପଛଡ଼ା ହୋଇଯାଇଛି । ତା' ଭିତରେ ଜ୍ଞାନଶକ୍ତି ବଢ଼ିଛି, ମାତ୍ର ପ୍ରେମଶକ୍ତି ବୃଦ୍ଧି ପାଇ ନାହିଁ । ଯେତେବେଳେ ମଣିଷ ପାଖରେ ଖୁବ୍ ବେଶୀ ଜ୍ଞାନ ନ ଥିଲା, ଅଳ୍ପ ଜ୍ଞାନ ଥିଲା, ସେତେବେଳେ ଅଳ୍ପ ପ୍ରେମରେ ତା'ର ଚଳି ଯାଉଥିଲା । ମାତ୍ର ଏବେ ଯେତେବେଳେ ଜ୍ଞାନ ବଢ଼ିଛି, ସେତେବେଳେ ଏକଥା ଚଳିବ କିପରି ?

ଆମଣମାନେ ବେଙ୍ଗର ଚରିତ୍ରକୁ ଦେଖନ୍ତୁ । ବେଙ୍ଗ କୂଅ ଭିତରେ ଥାଏ । କୂଅ ବାହାରେ ଦୁନିଆରେ କେଉଁଠି କ'ଣ ଘଟୁଛି ସେ ବିଷୟରେ ତା'ର କିଛି ଧାରଣା ନ ଥାଏ । ଏଣୁ ତା'ର ଜ୍ଞାନ ଯେଉଁଭଳି ଅଳ୍ପ ସେହିଭଳି ପ୍ରେମଶକ୍ତି ମଧ୍ୟ ତା' ଭିତରେ ଊଣା । ଏଥିରେ ତା'ର କିଛି ଅସୁବିଧା ହୁଏ ନାହିଁ, କାମ ଚଳି ଯାଏ । ମାତ୍ର ମଣିଷ ତ ଆଉ ବେଙ୍ଗ ନୁହେଁ । ତା'ର ଜ୍ଞାନ ବଢ଼ିଛି । ବୁଦ୍ଧି ବଢ଼ିଛି । ମନ ଭିତରର ପ୍ରେମ ବଢ଼ି ନାହିଁ । ଫଳରେ ଝଗଡ଼ା ସୃଷ୍ଟି ହେଉଛି । ଏଣୁ ଆମକୁ ଆମର ପ୍ରେମକୁ ବିଶାଳ କରିବାକୁ ହେବ । ତା'ର ଆରମ୍ଭ ହେବ କେଉଁଠୁ? ତା'ର ଆରମ୍ଭ ହେବ ଗାଁ ଭିତରୁ । ପୂର୍ବେ ଆମେ ଗୋଟିଏ ପରିବାର ଭିତରେ ଆବଦ୍ଧ ହୋଇ ରହୁଥିଲୁ । ପାଞ୍ଚଜଣ ମଣିଷରେ ଗୋଟିଏ ପରିବାର ଥିଲା । ଏବେ ଗ୍ରାମଦାନ ହେଲେ ଗାଁର ଦୁଇଶହ ଲୋକଙ୍କର ଗୋଟିଏ ବଡ଼ ପରିବାର ହେବ । ସମସ୍ତେ ବାଣ୍ଟିକୁଣ୍ଟି ଖାଇବୁ ଆଉ ମିଳିମିଶି ଚଳିବୁ ତ ହୃଦୟର ବିଶାଳତା ଏଇଠୁ ଆରମ୍ଭ ହେବ । ତଦ୍ଦ୍ୱାରା ଦୁନିଆରେ ଶାନ୍ତିର ପ୍ରତିଷ୍ଠା ହେବ ଓ ବିଜ୍ଞାନର ଆଜି ଯେଉଁ କୁପ୍ରଭାବ ରହିଛି, ତାକୁ ଏଡ଼େଇ ଦେଇ ହେବ । ବିଜ୍ଞାନର କୁପ୍ରଭାବ କହିଲେ କ'ଣ ବୁଝାଏ ? ବିଜ୍ଞାନଦ୍ୱାରା ମଣିଷର ସଂହାର । ପରସ୍ପର ଭିତରେ ଦ୍ୱେଷ ବଢ଼ିଲେ, ମଣିଷ ସମାଜର ସଂହାର ହେବ ଓ ବିଜ୍ଞାନହିଁ ଏ କଥା କରିବ । ମାତ୍ର ଏହାକୁ ଟାଳିପାରିଲେ ବିଜ୍ଞାନ ବଳରେ ଆମେ ଆମ ଜମିର ଉତ୍ପାଦନ ବଢ଼ାଇ ପାରିବା । ଉନ୍ନତ ଧରଣର ଯନ୍ତ୍ର କାମରେ ଲଗାଇ ପାରିବା । ମାତ୍ର ଏଠି ସେଠି ଅଲଗା ଅଲଗା ଭାବରେ କାମ କଲେ ବିଜ୍ଞାନର ଲାଭ ସମସ୍ତଙ୍କୁ ମିଳି ପାରିବ ନାହିଁ । ସେଥିପାଇଁ ଆମ ସମସ୍ତଙ୍କୁ ଏକାଠି ହେବାକୁ ହେବ । ଏକାଠି ବସି ଗାଁ କଥା ଚିନ୍ତା କରିବାକୁ

ପଡ଼ିବ । ବିଜ୍ଞାନର ସାହାଯ୍ୟ ପାଇବା ପାଇଁ ଗାଁରେ ପ୍ରେମର ବଳ ବଢ଼ାଇବା ପାଇଁ ଆମକୁ ପରସ୍ପର ସହଯୋଗ କରିବାକୁ ହେବ । ତଦ୍ୱାରା ହୃଦୟର ବିକାଶ ଘଟିବ, ଉପରନ୍ତୁ ଗାଁରେ ଆଧ୍ୟାତ୍ମିକ ଭାବନା ସୃଷ୍ଟି ହେବ । ଏକଥା ଆଜି ସ୍ୱୀକୃତ ହୋଇ ସାରିଛି, ପ୍ରାଚୀନ ଯୁଗରେ ଗାଁ ଭିତରେ ପ୍ରତ୍ୟେକେ ପରସ୍ପର ଠାରୁ ଅଲଗା ହୋଇ କାମ କରିବା ଦ୍ୱାରା ଗାଁର ବିଶେଷ ଅସୁବିଧା ହେଉ ନ ଥିଲା । ମାତ୍ର ଆମ ଗାଁର ଅର୍ଥନୀତିରେ ପରିବର୍ତ୍ତନ ଆଣିବା ପାଇଁ, କୃଷିରେ ଉନ୍ନତି କରିବାପାଇଁ ଓ ବିଜ୍ଞାନର ଉପଯୋଗ ପାଇଁ ସମସ୍ତଙ୍କୁ ଏକାଠି ମିଶି ଏକ ହୋଇ କାମ କରିବାକୁ ହେବ ।

କିନ୍ତୁ ଆଜି କ'ଣ ହୋଇଛି ? ପାକିସ୍ଥାନକୁ ବିପଦ ବୋଲି ମନେକରି ଭାରତ ତାକୁ ଡରୁଛି । ପାକିସ୍ଥାନ ମଧ୍ୟ ସେହିପରି ଭାରତକୁ ଭୟ କରୁଛି ଏବଂ ଭାରତ ଓ ପାକିସ୍ଥାନ ଭିତରେ ଏହିରୂପେ ଭୟ ବଢ଼ି ଚାଲିଛି । ଠିକ୍ ଏହି କଥା ଲାଗୁ ହେବ ରୁଷ୍ ଏବଂ ଆମେରିକା ପ୍ରତି । ଏବେ ଭାରତ ଏବଂ ଚୀନର ଉଦାହରଣ ନିଅନ୍ତୁ । ଚୀନ୍‌ବାଲା ଭାରତର କୌଣସି ଖବରକାଗଜ ପଢ଼ିବେ ନାହିଁ କି ଭାରତବାଲା ଚୀନ୍‌ର କୌଣସି ଖବରକାଗଜ ପଢ଼ିବେ ନାହିଁ । ନିଜ ପକ୍ଷ ବ୍ୟତୀତ ବିରୋଧୀ ପକ୍ଷର କୌଣସି ସମ୍ବାଦପତ୍ର ବା ସାହିତ୍ୟ ନ ପଢ଼ି ଯଦି ପୂର୍ବପରି ନିଜ ନିଜ ବୁଦ୍ଧିର କବାଟ ବନ୍ଦ ରଖିବେ, ତାହାହେଲେ ପରସ୍ପର ଭଲ ଗୁଣକୁ ଦେଖି ପାରିବେ ନାହିଁ । ଚୀନର ଲୋକେ ଭାରତବାସୀଙ୍କୁ ରାକ୍ଷସ ବୋଲି ମନେ କରିବେ ଓ ଭାରତବାସୀ ମଧ୍ୟ ସେହିପରି ତାଙ୍କୁ ରାକ୍ଷସ ବିଚାରିବେ, ପରସ୍ପରକୁ ରାକ୍ଷସ ବୋଲି ଧରିନେଇ ବସି ଥିବେ । କେଡ଼େ ଆଶ୍ଚର୍ଯ୍ୟ କଥା ।

ଆତ୍ମବତ୍ ସର୍ବ ଭୂତେଷୁ—

ଉଭୟ ଦେଶର ଲୋକ ଆମେ ପିଲାଛୁଆ ପରିବାର ଧରି ରହୁଛୁଁ । ପ୍ରେମ ଶକ୍ତିରେ ଜନ୍ମ ନେଉଛୁ । ପ୍ରେମ ଶକ୍ତିରେ ଜୀଇଁ ରହୁଛୁ ଓ ମରିବା ବେଳେ ମଧ୍ୟ ପ୍ରେମର ସ୍ପର୍ଶ ଲୋଡ଼ୁଛୁ । ତାହା ସତ୍ତ୍ୱେ ଜଣେ ଅନ୍ୟ ଜଣକୁ ଅବିଶ୍ୱାସ କରି ଏକ ଅପରକୁ ରକ୍ଷସ ବୋଲି ମନେ କରୁଛି । ଆଜି ଏହି ଅବିଶ୍ୱାସ କେବଳ ଦୁଇ ଦେଶ ଭିତରେ ନୁହେଁ, ଗାଁ ଗାଁ, ପଡ଼ୋଶୀ ପଡ଼ୋଶୀ ମଧ୍ୟରେ ଚେର ମାଡ଼ି ବସିଛି । ମନେ କରନ୍ତୁ ଗୋଟିଏ ଗାଁର ଦୁଇଟି ଚାଷୀ । ଏକା ପଡ଼ାରେ ସେମାନଙ୍କର ଘର । ତଥାପି କାଲେ ଯା’ ବଳଦ ଆସି ତା’ କିଆରିରେ ଆଉ ତା’ ବଳଦ ଆସି ଯା କିଆରିରେ ଚରି ଫସଲ ନଷ୍ଟ କରିଦେବ ବୋଲି ଭାବି ଦୁଇଜଣଯାକ ରାତି ଅନିଦ୍ରା ହୋଇ ମଞ୍ଚା ଉପରେ ବସି ନିଜନିଜ ଫସଲ ଜଗିବାରେ ବ୍ୟସ୍ତ । ମାତ୍ର ଆମର ଶାସ୍ତ୍ର କହୁଛି ଯେ, ପଡ଼ୋଶୀକୁ ଅବିଶ୍ୱାସ ନ କରି ପ୍ରେମକର । “ଆତ୍ମବତ୍ ସର୍ବଭୂତେଷ” ଏ କଥା ଆମର ଧର୍ମଗ୍ରନ୍ଥ—ଗୀତା, ରାମାୟଣ, ମହାଭାରତ ସବୁଥିରେ ରହିଛି । ଖାଲି ସେତିକି ନୁହେଁ, ବାଇବେଲ୍ ତ ଏ ପର୍ଯ୍ୟନ୍ତ କହୁଛି ଯେ, ତମେ ଖାଲି ପଡ଼ୋଶୀକୁ ଏମିତି ସେମିତି ପ୍ରେମକର ନାହିଁ । ନିଜ ପ୍ରତି ଯେମିତି ପ୍ରେମ କରୁଛ ପଡ଼ୋଶୀ ପ୍ରତି ଠିକ୍ ସେହିପରି ପ୍ରେମକର । (Love thy (neighbour) as thyself).

ସାମ୍ନାପଡ଼ିଶା ଭିତରେ ଏହିପରି ଅବିଶ୍ୱାସ ଥିଲେ, ଆଜି ମଣିଷ ହାତକୁ ଯେଉଁ ବିଜ୍ଞାନ ବା ବିକଶିତ ଜ୍ଞାନର ଶକ୍ତି ଆସିଛି, ତାହା କେଉଁ କାମକୁ ପାଇବ ? ମଣିଷ ଜାତିକୁ ଶେଷ କରି ଦେବ ସିନା ! ପୂର୍ବରୁ କାମ, କ୍ରୋଧ, ଲୋଭ ଆଦି ଦୁର୍ଗୁଣ ଯେତେ ପରିମାଣରେ ଥିଲା, ଯଦି ଆଜି ମଧ୍ୟ ସେତିକି ପରିମାଣରେ ରହେ,

ଆଜ ତା' ସହିତ ବିଜ୍ଞାନର ସଂଯୋଗ ଘଟିଛି, ତେଣୁ ତା'ର କୁପରିଣାମ ତାଙ୍କ ଅନେକ ଗୁଣ ବଢ଼ିଯିବ ।

ଗତବର୍ଷ ଲଣ୍ଡନ ମ୍ୟୁ ଜମ୍ବଲ ଘାଟିରେ ବୁଲୁଥିବାବେଳେ ସେଠା ଲୋକଙ୍କୁ ବୁଝାଇଲି ଯେ ପରସ୍ପରକୁ ଲୁଣ୍ଠନ କରିବା ଠିକ୍ ନୁହେଁ । ଯେତେବେଳେ ମଣିଷ ହାତରେ କେବଳ ଠେଙ୍ଗା ଥିଲା, ସେ ରାଗିଲେ ଅନ୍ୟକୁ ଦୁଇଚାରି ପାହାର ପିଟି ଦେଉଥିଲା । ଠେଙ୍ଗା ବଦଳରେ ହାତରେ ବନ୍ଧୁକ ଥିଲେ ଜଣେ ଲୋକ ସେତିକି ରାଗ ମୁଣ୍ଡରେ ଅନ୍ୟ ଜଣକୁ ପ୍ରାଣରେ ମାରି ଦେଇ ପାରେ । ଅର୍ଥାତ୍ ପରିଣାମ ପୂର୍ବଠାରୁ ଅନେକ ଗୁଣ ଭୟାନକ ହେବ ଏବଂ ବୋମା ହାତକୁ ଆସିଲେ କ'ଣ ହେବ—ସେ କଥା ନ କହିଲେ ବି ଭଲ । ଅର୍ଥାତ୍ ବିଜ୍ଞାନର ଶକ୍ତି ଯେତିକି ବଢ଼ିବ, କ୍ରୋଧର ପରିଣାମ ସେତିକି ଖରାପ ହୋଇ ଚାଲିବ । ପୁଣି ପ୍ରେମ ଯେତିକି ବଢ଼ିବ, ଏ ବିଜ୍ଞାନର ଯୁଗରେ ତାହାର ପରିଣାମ ସେତିକି ଅଧିକ ମଙ୍ଗଳପ୍ରଦ ହେବ ।

ପୂର୍ବକାଳରେ ଯଦି କାହାର କିଛି ବଥ ବା ଘା କାଟିବାକୁ ପଡ଼ୁଥିଲା, ତେବେ ଲୋକେ ରୋଗୀକୁ ଶୋଇପକାଇ ତା' ହାତଗୋଡ଼କୁ ବାନ୍ଧି ମାଡ଼ି ବସୁଥିଲେ । ରୋଗୀ ଯନ୍ତ୍ରଣାରେ ପ୍ରାଣପଣେ ଚିତ୍କାର କରୁଥିଲା । ମାତ୍ର ଏବେ ଯଦି କାହାର ହାତଗୋଡ଼ କାନ ଆଦି ଶରୀରର ଯେ କୌଣସି ଅଂଶରେ ଅସ୍ତ୍ରଚିକିତ୍ସା କରିବାକୁ ହେଉଛି, ତେବେ ରୋଗୀକୁ ମୋଟେ ଜଣା ପଡ଼ୁନାହିଁ ଯେ, ତା' ଦେହ ଚିରା ହେଉଛି ବୋଲି । କ୍ଲୋରୋଫର୍ମ ଦେଇ ଦେଲେ ରୋଗୀ ଅଚେତ ହୋଇ ଯାଉଛି, ଆଉ ଘଣ୍ଟାଘଣ୍ଟା ଧରି ଅସ୍ତ୍ରୋପଚାର ଚାଲୁଛି । ଏହିରୂପେ ବିଜ୍ଞାନ ମଣିଷର ବେଦନା ଲାଘବ କରିବାରେ ସାହାଯ୍ୟ କରୁଛି । ଏଥିରୁ ଜଣା ଯାଉଛି ଯେ

ବିଜ୍ଞାନର ଦୁଇଟି ଶକ୍ତି ଅଛି— ବିନାଶ ଶକ୍ତି ଏବଂ ବିକାଶ ଶକ୍ତି । ଗୋଟିକରେ ଅପାର ଦୁଃଖ ଆଉ ଅନ୍ୟଟିରେ ଅପାର ଆନନ୍ଦ ନିହିତ ଅଛି । ଏଣୁ ବିଜ୍ଞାନକୁ ଉପଯୋଗ କରିବାକୁ ହେଲେ ଆମ ହୃଦୟ ଭିତରେ ପ୍ରେମ ଥିବା ଆବଶ୍ୟକ । ଏବେ ବିଜ୍ଞାନ ବଢ଼ି ଚାଲିଛି । ଏଣୁ ହିଂସା ଚଳି ପାରିବ ନାହିଁ । ଏଇଥିପାଇଁ ଏଣିକି ଆମେ ପଡ଼ୋଶୀ ଭାବେ ମିଳିମିଶି କାମ କରିବା କଥା । ଆଜି ଏଇଥିପାଇଁ ଆମର ମନ୍ତ୍ର ହେଉଛି ଗ୍ରାମଦାନ । ତଳସ୍ତରରେ ଗାଁ ଏକ ହୋଇଯିବ ଓ ଉପର ସ୍ତରରେ ବିଶ୍ୱ ମଧ୍ୟ ଏକ ହେବ । ଆଜି କେନେଡ଼ି ଓ କ୍ରୁଶ୍ଚେଭ ଉଭୟ ପରସ୍ପର ନିକଟକୁ ଆସୁଛନ୍ତି । ଏତିକ କାହିଁକି ? ସେମାନେ ଏକ ଅପରର ଆହୁରି ନିକଟବର୍ତ୍ତୀ ହେଉନ୍ତୁ । ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ପ୍ରେମଭାବ ବଢ଼ୁ । ଉଭୟେ ତ ଖ୍ରୀଷ୍ଟିୟାନ । ଏଣୁ ଅନ୍ତତଃ ଖ୍ରୀଷ୍ଟଙ୍କ ନାମରେ ସେମାନେ ପରସ୍ପରକୁ ପ୍ରେମ କରନ୍ତୁ । ସେହିପରି ଭାରତ ଆଉ ଚୀନ ଭିତରର କଥା । ଏଠି ବୁଦ୍ଧଦେବ ସ୍ୱୟଂ ଜନ୍ମଗ୍ରହଣ କରିଥିଲେ ଆଉ ଚୀନ୍‌ରେ ଏବେ ମଧ୍ୟ ବୌଦ୍ଧଧର୍ମ ରହିଛି । ପୁଣି ଉଭୟ ଦେଶ ବୁଦ୍ଧ ଭଗବାନ୍‌ଙ୍କୁ ଭକ୍ତି କରନ୍ତି । ଏଣୁ ତାଙ୍କରି ନାମରେ ଅନ୍ତତଃ ଏମାନେ ନିଜ ନିଜ ଭିତରେ ପ୍ରେମଭାବ ବଢ଼ାନ୍ତୁ । ଏହିରୂପେ ସାହିପଡ଼ିଶା, ଗାଁ ଏବଂ ଦେଶରେ ପ୍ରେମର ଶକ୍ତି ବୃଦ୍ଧି କରିପାରିଲେ, ତେବେଣେ ବିଶ୍ୱରେ ମଧ୍ୟ ପ୍ରେମ ବଢ଼ି ପାରିବ ଓ ଦୁନିଆକୁ ଶାନ୍ତି ଓ ସ୍ୱର୍ଗ ଓହ୍ଲାଇ ଆସିବା ସମ୍ଭବ ହେବ ।

ତ୍ୟାଗରେ ହିଁ ଅସଲ ଭୋଗ ରହିଛି—

ଏଥିପାଇଁ ଯାଜପୁର ପରି ଶ୍ରେଷ୍ଠ ସହରମାନେ କ'ଣ କରି ପାରିବେ ? ଏଠାରେ ଅନ୍ତତଃ ଏତିକ ହୋଇପାରେ ଯେ, ପ୍ରତିଟି ସାହି କିମ୍ବା ପ୍ରତିଟି ପଡ଼ାରେ କମିଟିମାନ ଗଠନ କରି ଲୋକେ ସାହି

ପଡ଼ିଶାଙ୍କର ସୁଖଦୁଃଖ ଅଭାବ ଅସୁବିଧା ପ୍ରତି ଧ୍ୟାନ ଦିଅନ୍ତୁ । ଯଦି କାହାର ତୁରନ୍ତ କିଛି ସାହାଯ୍ୟ ଦରକାର ତାକୁ ସେମାନେ ଦିଅନ୍ତୁ । ପଡ଼ାରେ ଥିବା ଭୂମିବାନ୍ ଲୋକେ ନିଜ ଭୂମିର କୋଡ଼ିଏ ଭାଗରୁ ଭାଗେ ଗରିବ ଲୋକଙ୍କ ସେବାରେ ଦାନ କରନ୍ତୁ ଏବଂ ବ୍ୟବସାୟୀମାନେ ପଡ଼ୋଶୀକୁ ସାହାଯ୍ୟ କରିବା ଦୃଷ୍ଟିରୁ କରଜ-ଦେଇ ସୁଧ ନିଅନ୍ତୁ ନାହିଁ ଓ ଶହେ ଟଙ୍କାରେ ପଚାଶ ଟଙ୍କା ନିଅନ୍ତୁ । ତେବେ ଯାଇ ପଡ଼ାର ସବୁପ୍ରକାର ଲୋକଙ୍କୁ ଆନନ୍ଦ ମିଳି ପାରିବ ।

କେହି କେହି ପଚାରିଥାଆନ୍ତି, "ବାବା ! ଏ ଯେଉଁ କଥା ଆପଣ କହୁଛନ୍ତି, ଏହା ତ ସତ୍ୟଯୁଗର କଥା । ଭଲକଥା । ମାତ୍ର ଏଥିରେ ଆମର ବେପାର ଚଳିବ କିପରି ? ସେମାନଙ୍କୁ ମୁଁ କହେ —"ଭାଇ, ବେପାରୀର ମୁଖ୍ୟ କଥା ହେଲା ବେପାର । ଯେତେବେଳେ ବେପାରୀ ଭାଇ ଗ୍ରାମସଭାକୁ ସାହାଯ୍ୟ ଦେବ, ଗାଁ ଲୋକେ ତା'ଠାରୁ ଉପକାର ପାଇବେ, ସେତେବେଳେ ସେମାନେ ଖୁସିରେ ତା'ପାଖକୁ ଆସିବେ । ବେପାରୀ ପ୍ରତି ସେମାନଙ୍କର ଆଦର ବଢ଼ିବ ଓ ତା'ର ଦୋକାନ ମଧ୍ୟ ଭଲଭାବରେ ଚାଲିବ । ଏତ କିଛି ବୋକାମି ନୁହେଁ ଓଲଟା ବୁଦ୍ଧିର କଥା—ପରମାର୍ଥିର କଥା ।

ସମାଜରେ ଆଜି ବେପାରୀ ବିନା ଚଳି ହେବନାହିଁ । ସେମାନେ ଦୁନିଆର କୋଣ କୋଣରୁ ଜିନିଷ ଆଣି ଯୋଗାଇ ଥାଆନ୍ତି । ତଥାପି ଲୋକେ ସେମାନଙ୍କୁ ଗାଳି ଦିଅନ୍ତି । ଏହାର କାରଣ କଅଣ ? ଏହାର କାରଣ ହେଉଛି ବେପାରୀମାନଙ୍କର ନିଜର ମୂର୍ଖତା ଓ ସଙ୍କୁଚିତ ହୃଦୟ । ଏଠାରେ ଯିଏ ବେପାରୀ ସେ ପୂର୍ବକାଳରେ ଆନ୍ଧ୍ର, ମଧ୍ୟପ୍ରଦେଶ କିମ୍ବା କଲିକତାରୁ ତା'ର ମାଲ ଆଣୁ ଥିଲା । କିନ୍ତୁ

ଏବେ ତ ସେ ମାଲ ଅଣୁଛି ଇଂଲଣ୍ଡ, ଆମେରିକା, ଜାପାନ କିମ୍ବା ରୁଷିଆ । ଏହାର ଅର୍ଥ ହେଉଛି ବେପାରୀର ବୁଦ୍ଧି ବଢ଼ିଛି । ମାତ୍ର ତା'ର ହୃଦୟ ସେହି ପୁରୁଣାକାଳିଆ ଗ୍ରେଟିଆ ହୃଦୟ ହୋଇ ରହି ଯାଇଛି । ଏଣୁ ଯେତେବେଳେ ହୃଦୟ ବିଶାଳ ହେବ, ସେତେ-ବେଳେ ଶହେଟଙ୍କା ଦେଇ ପଞ୍ଚାନବେ ଟଙ୍କା ନେଲେ ତା' ମନରେ ଦୁଃଖ ହେବ ନାହିଁ । ବରଂ ଆନନ୍ଦ ଆସିବ । ଏଇ ଗ୍ରେଟିଆ ତ୍ୟାଗ ଭିତରୁ ଭୋଗର ଉପାଦାନ ତାକୁ ମିଳିବ । ଆପଣ କଅଁଶରେ ମଞ୍ଜି ପକାଇଲାବେଳେ ଗୋଟିଏ ମଞ୍ଜି ପକାନ୍ତି । ପରେ ତାହା ଆପଣଙ୍କୁ ଶହେଟି ମଞ୍ଜି ଫେରାଏ । ଅର୍ଥାତ୍ ଭବିଷ୍ୟତରେ ଶହେଟି ମଞ୍ଜି ଭୋଗ କରିବା ନିମନ୍ତେ ଆପଣଙ୍କୁ ଗୋଟିଏ ମଞ୍ଜିର ତ୍ୟାଗ କରିବାକୁ ପଡ଼ିଥାଏ । ବ୍ୟବସାୟୀମାନଙ୍କୁ ମୁଁ ବୁଝାଇବାକୁ ଚାହେଁ ଯେ, ଶହେଟଙ୍କାରେ ପଞ୍ଚାନବେ ଟଙ୍କା ଆଣି ଏ ଯେଉଁ ଗ୍ରେଟିଆ ତ୍ୟାଗ ସେମାନେ କରିବେ, ତାହା ସେମାନଙ୍କର ତ୍ୟାଗ ନୁହେଁ— ଭୋଗର ଉପାଦାନ ମାତ୍ର ।

ଆପଣମାନେ ଜାଣିଥିବେ ଯେ, ଏବେ ପଶ୍ଚିମବଙ୍ଗର ଛତିଶହ ସରିକ ବ୍ୟବସାୟୀ ମୋତେ ଏ କଥାରେ ପ୍ରତିଶ୍ରୁତି ଲିଖିତ ଆକାରରେ ଦେଇଛନ୍ତି । ଅର୍ଥାତ୍ ଏ କଥାର ଆରମ୍ଭ ହୋଇ ଯାଇଛି । ଏଥିରୁ ଆପଣମାନେ ବୁଝନ୍ତୁ ଯେ ମଣିଷର ହୃଦୟ ତା'ର ବୁଦ୍ଧିପରି ବିଶାଳ ହେଉଛି କି ନା ! ତାହା ସତ୍ତ୍ୱେ ହୁଏତ ଆପଣମାନଙ୍କ ମନରେ ସନ୍ଦେହ ଆସୁ ନ ଥିବ ଯେ ଶହେ-ଟଙ୍କାକୁ ହଜାରେ କିମ୍ବା ଦୁଇହଜାର ଟଙ୍କା ନ କରି ତାକୁ ପଞ୍ଚାନବେ କରିବା କ'ଣ ସମ୍ଭବ ? ମାତ୍ର ମୁଁ ପଚାରୁଛି—ଭାରତବର୍ଷ ତଳେ ଭୂଦାନଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ କେହି କ'ଣ ଚିନ୍ତା କରି ପାରିଥିଲା ଯେ ପଚିଶଲକ୍ଷ ଏକର ଭୂଦାନ ଏଠି ମିଳିବ ?

ଆଜି ତ ସେଥିରୁ ଦଶଲକ୍ଷ ଏକରର ବଣ୍ଟନ ସରିଲାଣି । ଯେଉଁଠି ବଣ୍ଟା ପାଇଛି, ସେଉଁଠିକଙ୍କୁହିଁ ଯଦି ଆମ୍ଭେମାନେ ପ୍ରକୃତ ଦାନ ବୋଲି ଧରିନ୍ତି, ତେବେ ବି ତା'ର ଦାନ ହେବ ଅନ୍ୟୂନ ଦଶଲକ୍ଷ ଟଙ୍କା । ଏତିକି ତ ବିନୋବା ଦାତାଙ୍କୁ ଦାନରୂପେ ଅର୍ପିଛନ୍ତି । କେଉଁମାନେ ଏହାଙ୍କୁ ଦାନ କରିଛନ୍ତି ? ଏଇ କଳିଯୁଗର ମଣିଷ—୧୯୬୧, ୧୯୬୨, ୧୯୬୩ ସାଲର ଲୋକ ତ ? ଯଦି ସାଧାରଣ ଲୋକେ ଏପରି ତ୍ୟାଗ କରି ପାରିଲେ ତେବେ ବ୍ୟବସାୟୀମାନେ ଏହା କରି ନ ପାରିବେ କାହିଁକି ?

ବିଜ୍ଞାନଯୁଗରେ ଇହ ଓ ପରଲୋକର ଭେଦନାହିଁ—

ପୂର୍ବେ ଲୋକମାନେ ଇହଲୋକ ପରଲୋକର ବିଚାର କରୁଥିଲେ । ଶାସ୍ତ୍ରରେ କୁହା ଯାଇଥିଲା ଯେ—ମୃତ୍ୟୁପରେ ମଣିଷ ଚନ୍ଦ୍ରଲୋକକୁ ଯାଏ । କିନ୍ତୁ ଏବେ ତ ସେ ଜୀବନ୍ତଭାବରେ ଚନ୍ଦ୍ରଲୋକକୁ ଯାଉଛି । ଆଜି ଅବଶ୍ୟ ସେ ସେଠାରେ ପହଞ୍ଚି ପାରି ନାହିଁ; ତେବେ ଆଉ ପାଞ୍ଚ ଦଶ ବର୍ଷରେ ଚନ୍ଦ୍ରଲୋକକୁ ଯାଇ ପାରିବ ; ଏହିରୂପେ ବିଜ୍ଞାନର ଯୁଗରେ ଇହ ପରଲୋକର ଭେଦ ଲୋପ ପାଇ ଯାଉଛି । ପୂର୍ବେ ଧାରଣା ଥିଲା ଯେ' ମଣିଷ ଇହଲୋକରେ ଯେଉଁ ପାପ ବା ପୁଣ୍ୟ କରେ, ତା'ର ଫଳ ତାକୁ ପରଲୋକରେ ମିଳେ । କିନ୍ତୁ ଆଜି ଯେତେବେଳେ ସେ ଇହଲୋକ ପରଲୋକର ଭେଦ ମେଣ୍ଟାଇ ଦେଉଛି, ସେତେବେଳେ ଏଠାରେ କରିଥିବା ପାପ ପୁଣ୍ୟର ଫଳପାଇଁ ତାକୁ ପରଲୋକକୁ ଅପେକ୍ଷା କରିବାକୁ ପଡିବ ନାହିଁ । ତାକୁ ତା'ର ଫଳ ଏଠାରେ ହିଁ ଭୋଗ କରିବାକୁ ହେବ । ଏଣୁ ଏଇ ଯେଉଁ ଗ୍ରାମଦାନର କଥା ବା ମିଳିମିଶି ଚଳିବାର କଥା—ଏହା ଇହ ଲୋକପାଇଁ ହିଁ ଲାଭଦାୟୀ । ପରଲୋକ ପାଇଁ ଉଦ୍ଦିଷ୍ଟ ନୁହେଁ ।

ଦେଶବ୍ୟାପୀ ନିର୍ବାଚନ ମୋଟେ ସାତଦିନ ଭିତରେ ସରିଯାଏ । ଯଦି ସମସ୍ତେ ଏ କଥାକୁ କରିବସିବା ପାଇଁ ଅଣ୍ଟାଭିଡ଼ି ବାହାରି ପଡ଼ିବେ, ତେବେ ମାସକ ଭିତରେ ଏହା ସଫଳ ହୋଇ ପାରିବ । ଆମର ବୁଦ୍ଧି ତ ଗ୍ରାମଦାନ କଥାକୁ ମାନିନେଇ ସାରିଛି । ଖାଲି ହୃଦୟ ଭିତରେ ଗ୍ରହଣ କରିବାକୁ ବାକୀ ଅଛି । ଯଦି ଏତିକ ହୋଇଯାଏ, ତେବେ ବେଶୀ ଡେରି ଲାଗିବ ନାହିଁ ।

( କଟକ ଜିଲ୍ଲାପରିଷଦ, ପଞ୍ଚାୟତ ସମିତି, ଗ୍ରାମପଞ୍ଚାୟତର କର୍ମକର୍ତ୍ତାମାନଙ୍କ ସମ୍ମିଳନୀରେ ପ୍ରଦତ୍ତ ଭାଷଣ, ୧୫।୯।୬୩ )



## "ଗ୍ରାମଦାନୀ ଗାଁରେ ସ୍ନେହର ଆଇନ ଚଳିବ"

ଦେଶର ସର୍ବଶ୍ରେଷ୍ଠ ଶତ୍ରୁ ଦାରିଦ୍ର୍ୟ—

ଏଠି ଆପଣମାନେ ମୋର ନିଜର ଲୋକ ବସିଛନ୍ତି ବୋଲି ମୁଁ ଧରି ନେଇଛି । ଏଇଥିପାଇଁ ମୋତେ ଯେତେବେଳେ ପଚରା ଯାଇଥାଏ ଯେ ସର୍ବୋଦୟ ସମାଜ କେବେ ସ୍ଥାପିତ ହେବ, ସେତେବେଳେ ମୁଁ ଉତ୍ତର ଦେଇଥାଏ ଯେ, ସର୍ବୋଦୟ ସମାଜର ସ୍ଥାପନା ହୋଇ ସାରିଛି । କାରଣ ବିଧାନ ସଭାର ବାଚସ୍ପତି ବିଶ୍ୱବିଦ୍ୟାଳୟର କୁଳପତି, ଡାକ୍ତରଖାନାର ଡାକ୍ତର ଏବଂ ନର୍ସ ପକ୍ଷଭୁକ୍ତ ହୋଇ ନିଜର କାମ କରନ୍ତି ନାହିଁ । ବିଚାରପତିଙ୍କର ନ୍ୟାୟ ନିର୍ଦ୍ଦଳୀୟ ହୁଏ । ବାଚସ୍ପତିଙ୍କୁ ପ୍ରତିକଥାରେ ନିଜର ବିଚାରକୁ ତଟସ୍ଥରଖି ରୁଲିଂ (ନିର୍ଦ୍ଦେଶ ଦେବାକୁ ପଡ଼େ ଓ ରାଷ୍ଟ୍ରପତି ସମଗ୍ର ଦେଶର ଲୋକ ସାଧାରଣଙ୍କ ସହିତ ସମାନ ସମ୍ପର୍କ ରଖି ଥାଆନ୍ତି । ଏଣୁ ସେମାନେ ସମସ୍ତେ ସର୍ବୋଦୟର ସଦସ୍ୟ ହୋଇ ସାରିଛନ୍ତି । ପୁଣି ଆପଣମାନେ, ଯେଉଁମାନେ କି ଦେଶର ଦୁଃଖୀ ଲୋକମାନଙ୍କର ସେବା ଏବଂ ସେମାନଙ୍କର କଷ୍ଟ ନିବାରଣରେ କାମରେ ଲାଗିଛନ୍ତି ଓ ଲାଗିବା ଉଚିତ ମଧ୍ୟ, ସେମାନଙ୍କୁ ମୁଁ ମୋ ନିଜର ଲୋକବୋଲି ପୂର୍ବରୁ ଧରିନେଇ ସାରିଛି । ସେଥିପାଇଁ ବ୍ଲକଉନ୍ନୟନ ଅଫିସର B. D. O.ଙ୍କୁ ମୁଁ ଭୂଦାନ ଅଫିସର BHOODAN OFFICER ଏବଂ ସବଡିଭିଜନର ଅଫିସର S. D. O.ଙ୍କୁ ସର୍ବୋଦୟ ଉନ୍ନୟନ ଅଫିସର SARVODAYA

DEVELOPMENT OFFICER ରୂପେ ଧରି ନେଇଛନ୍ତି ବୋଲି ଖାଲି ସେହିମାନଙ୍କୁ କହୁ ନାହିଁ; ଅନେକ ବଡ ବଡ଼ ଲୋକଙ୍କୁ ମଧ୍ୟ କହିଛୁ ଓ ସେମାନେ ମୋ କଥାକୁ ଅଗ୍ରହରେ ମଞ୍ଜୁର କରୁଛନ୍ତି ।

ନଅମାସ ତଳର କଥା । ପଣ୍ଡିତ ନେହେରୁଙ୍କୁ ଭେଟିବାର ସୁଯୋଗ ମୋତେ ମିଳିଲା । ଆମେ ଉଭୟେ ଗୋଟିଏ ସଭାରେ ଭାଷଣ ଦେଇଥିଲୁ । ପଣ୍ଡିତ ନେହେରୁ ସେଠାରେ କହିଲେ, "ଆମ ଦେଶ ଆଗରେ ଚୀନ୍‌ର ସମ୍ମୁଖୀନ ହେବାର ସମସ୍ୟା ରହିଛି । ଆମେ ତା'ର ଠିକଣା ଜବାବ ଦେଇ ପାରିବା । ଆମ ଦେଶଭିତରେ ଜବରଦସ୍ତି ସେ ନିଜ ଗୋଡ଼ ପୂରେଇଛି ଓ ତାହା ସେ ନିଶ୍ଚୟ ଉଠାଇ ନେବ । ସୁତରାଂ, ଚୀନ୍‌କୁ ଆମର ସୀମାନ୍ତରୁ ହଟେଇବା କିଛି ବଡ଼ କଥା ନୁହେଁ ।" ସାହସର ସହିତ ପଣ୍ଡିତ ନେହେରୁ ଏକଥା କହିଛନ୍ତି ଏବଂ ମୁଁ ସ୍ୱୀକାର କରୁଛି ଯେ ଏହା ଆମ ପକ୍ଷରେ କିଛି କଠିନ କଥା ନୁହେଁ । ଚୀନ୍ ନିଶ୍ଚୟ ପଛକୁ ହଟିବ । କାରଣ ତା'ର ଆକ୍ରମଣ ପଛରେ ସତ୍ୟର ଆଧାର ଆଦୌ ନାହିଁ । ଏଣୁ ଚୀନ୍‌ର ଲୋକେ ଦୁନିଆର ସହାନୁଭୂତି ଆଦି ହରାଇ ବସୁଛନ୍ତି । ଆଗକୁ ହରାଇବେ ମଧ୍ୟ । ଆମର ସିଦ୍ଧାନ୍ତ ହେଉଛି ସତ୍ୟର ଜୟ ହେଉ ବା 'ସତ୍ୟ ମେବ ଜୟତେ' । ସୁତରାଂ ସେମାନଙ୍କୁ ହଟେଇବା ଲାଗି ଆମକୁ ବେଶୀ କିଛି ପରାକ୍ରମ କରିବାକୁ ପଡ଼ିବ ନାହିଁ । ମାତ୍ର ପଣ୍ଡିତ ନେହେରୁ ସେହି ସଭାରେ ପୁଣି କହିଥିଲେ, "ଆମ ଦେଶର ସବୁଠାରୁ ବଡ଼ଶତ୍ରୁ ହେଉଛି ଦାରିଦ୍ର୍ୟ ।" ମୁଁ ସେହିଦିନ ସଭାର କଥା କହୁଛି, ଯେଉଁଠି ନେହେରୁଜୀ ଓ ମୁଁ ଉଭୟେ ଉପସ୍ଥିତ ଥିଲୁ । ସେହି ସଭାରେ ସେ ନିଜର ଶ୍ରୋତାମାନଙ୍କ ଆଗରେ ପୁଣି କହିଥିଲେ ଯେ,

ଦେଶର ଦାରିଦ୍ର୍ୟର ନିରାକରଣ କରିବାକୁ ହେଲେ ଗ୍ରାମଦାନ ସର୍ବ ପ୍ରଥମ ହେବ ।

ଗ୍ରାମଦାନ ପାଇଁ ପ୍ରଧାନମନ୍ତ୍ରୀଙ୍କ ଆଦେଶ—

ତା ପୂର୍ବରୁ ପଲାସୀ ଗାଁ ଗ୍ରାମଦାନରେ ମିଳି ସାରିଥିଲା । ପଲାସୀ ଗାଁ ହେଉଛି ସେହି ଐତିହାସିକ ସ୍ଥାନ, ଯାହାକୁ ଅଧିକାର କରି-ସାରିବା ପରଠାରୁ ସମଗ୍ର ଭାରତବର୍ଷର ଦ୍ୱାର ଇଂରେଜମାନଙ୍କ ପାଇଁ ଖୋଲିଗଲା । ଏଣୁ ପଲାସୀକୁ ଯିବାଲାଗି ମୋର ଭାରି ଇଚ୍ଛା ଥିଲା । ସେଠାକୁ ଯିବା ପାଇଁ ପୂର୍ବରୁ କୌଣସି କାର୍ଯ୍ୟକ୍ରମ ରଖା ଯାଇ ନ ଥିଲା । ମାତ୍ର ମୁଁ ସେ କାର୍ଯ୍ୟକ୍ରମକୁ ବଦଳାଇ ପଲାସୀ ଗାଁରେ ମୋର ରହଣୀ ରଖିବା ଲାଗି ବଙ୍ଗଳାର ବ୍ୟବସ୍ଥାପକମାନଙ୍କୁ କହିଲି । ସେମାନେ ଯେତେବେଳେ ଜାଣିଲେ ଯେ ମୁଁ ପଲାସୀକୁ ଯିବାଲାଗି ଖୁବ୍ ଇଚ୍ଛୁକ, ତେଣୁ ସେମାନେ ସେ ଗାଁ ବାଟରେ ଯିବାର କାର୍ଯ୍ୟକ୍ରମ ରଖିଲେ ଓ ସମସ୍ତେ ମିଶି ପଲାସୀ ପାଇଁ ନଜର ଦେବା ଲଗାଇଲେ । ଶେଷରେ ତାହା ଗ୍ରାମଦାନ ହେଲା । ପଲାସୀରେ ହିନ୍ଦୁ ଓ ମୁସଲମାନଙ୍କ ସଂଖ୍ୟା ପ୍ରାୟ ସମାନ ସମାନ । ଗ୍ରାମଦାନ କରିବାକୁ ଏ ଉଭୟ ଧର୍ମର ଲୋକେ ଏକାଠି ହୋଇଗଲେ । ଭାରତବର୍ଷର ଇତିହାସରେ ଏହା ବଡ଼ ଘଟଣା ।

ଏକଦା ପଲାସୀର ଯୁଦ୍ଧ ଇଂରେଜମାନଙ୍କ ଲାଗି ସମଗ୍ର ଭାରତବର୍ଷକୁ ମୁକୁଳା କରି ଦେଇ ଥିଲା । ଏବେ ତା'ର ଲୋକସଂଖ୍ୟା ହେଉଛି ଦୁଇ ହଜାର ସତର ଓ ତାହା ଏକ ବଡ଼ ଗାଁ । ଯେତେବେଳେ ସେଠାର ହିନ୍ଦୁ ଏବଂ ମୁସଲମାନ ଉଭୟ ଗୋଷ୍ଠୀ ଏକମତ ହୋଇ ଗ୍ରାମଦାନ କରିଦେଲେ, ସେତେବେଳେ ମୁଁ ଧରିନେଲି ଯେ, ଗ୍ରାମଦାନ ଲାଗି ସାରା ଭାରତର କ୍ଷେତ୍ର ଖୋଲିଗଲା ।

ଏ କଥାର ଉଲ୍ଲେଖ କରି ପଣ୍ଡିତ ନେହେରୁ ସେହି ଭାବରେ ଶ୍ରୋତାମାନଙ୍କୁ ଗ୍ରାମଦାନ କରିବା ପାଇଁ ଉପଦେଶ ଦେଲେ । ମାତ୍ର ପଣ୍ଡିତ ନେହେରୁଙ୍କ କଥାକୁ ଆମେ ଉପଦେଶ ବୋଲି କହିବା କିପରି ? ମୋ କଥାକୁ ଉପଦେଶରୂପେ ଗ୍ରହଣ କରାଯାଇ ପାରେ । କାରଣ କାହାରିକୁ ଆଦେଶ ଦେବାର ଅଧିକାର ମୋର ନାହିଁ । କିନ୍ତୁ ତାଙ୍କ କଥା ତ ହେଉଛି ଆଦେଶ । ଯେଉଁଠାରେ ଆଦେଶ ଓ ଉପଦେଶ ଏକତ୍ରିତ ହୋଇଛନ୍ତି, ସେଠାରେ ସନ୍ଦେହର କୌଣସି କାରଣ ରହିବା ଅନୁଚିତ ।

ସରକାରୀ ସାହାଯ୍ୟ ପାଉଛି କିଏ ?—

ଏଠି ତ ବି. ଡି. ଓ.ମାନେ ଅର୍ଥାତ୍ ଭୂଦାନ ଅଫିସରମାନେ ବସିଛନ୍ତି । ଯେତିକ ପାରିବେ, ସେହି ପରିମାଣରେ ନିଜର ପରାକ୍ରମ ଗ୍ରାମଦାନ ପ୍ରାପ୍ତି କାମରେ ସେମାନେ ଲଗାନ୍ତୁ । ତେବେ ଯାଇ ଗାଁରେ କାମ କରିବାର ମୂଳଦୁଆ ପଡ଼ିବ । ଗ୍ରାମଦାନ ପରେ ଗାଁରେ ଉନ୍ନତିମୂଳକ କାମ କରିବା ସହଜ ହୋଇଯିବ । କେନ୍ଦ୍ରର ଗୋଷ୍ଠୀ ଉନ୍ନୟନ ବିଭାଗର ମନ୍ତ୍ରୀ ଶ୍ରୀ ଏସ୍. କେ. ଦେ. ତାମିଲ୍-ନାଡ଼ୁର କେତେ ଗ୍ରାମଦାନୀ ଗାଁ ଦେଖି ଆସି ମୋତେ ଭେଟିଥିଲେ । ସେ କହିଲେ, "ଗ୍ରାମଦାନ ଗାଁରେ ହିଁ କେବଳ ଗୋଷ୍ଠୀ ଉନ୍ନୟନର କାମ ଚାଲିପାରେ । ଅନ୍ୟ ଗାଁମାନଙ୍କରେ ତ ମୂଳରୁ ଗୋଷ୍ଠୀ ବୋଲି କିଛି ନାହିଁ । ସେମାନେ ଗୋଷ୍ଠୀଉନ୍ନୟନର କାମ କ'ଣ କରିବେ ? ଆମେ ଗରିବ ଲୋକଙ୍କୁ ସାହାଯ୍ୟ ମିଳିବା ଚାହୁଁଛୁ । ମାତ୍ର ପ୍ରକୃତରେ ସେମାନଙ୍କ ନିକଟରେ ସାହାଯ୍ୟ ପହଞ୍ଚି ପାରୁନାହିଁ । କେବଳ ଯେଉଁମାନଙ୍କର ସରକାରୀ ସାହାଯ୍ୟ ନେଇ ପାରିବାର ସାମର୍ଥ୍ୟ ରହିଛି, ସେହିମାନେ ପାଉଛନ୍ତି ।" ପାହାଡ଼ର ବଳଥିବାରୁ ମେଘକୁ ସେ ତା' ଆଡ଼କୁ ଟାଣି ଆଣିପାରେ । ସେଇମିତି ଦେଶର ବଡ଼

ବଡ଼ ଲୋକେ ସରକାରୀ ସାହାଯ୍ୟକୁ ଟାଣି ଆଣି ପାରୁଛନ୍ତି । ମାତ୍ର ଆଜି ଗାଁରେ ଯେଉଁ ଗରିବ ଓ ଦୁର୍ବଳ ଲୋକ ପଡ଼ି ରହି ଅଛନ୍ତି, ଖୋଜି ଖୋଜି ସେମାନଙ୍କ ନିକଟରେ ଆମକୁ ପହଞ୍ଚିବାକୁ ହେବ ଓ ସେମାନଙ୍କୁ ସାହାଯ୍ୟ ଦେବାକୁ ପଡ଼ିବ ।

ତିରିଶବର୍ଷ ତଳର କଥା । ସେଥର ଆସାମରେ ପ୍ରବଳ ବନ୍ୟା ହୋଇଥାଏ । ଫସଲ ଧୋଇଯିବାଦ୍ୱାରା ଦୁର୍ଭିକ୍ଷର ପରିସ୍ଥିତି ସେଠାରେ ଦେଖାଯାଇଥାଏ । ଏଣୁ ଗୁଜୁରାଟରୁ ଜଣେ ଧନୀ ଲୋକ ବ୍ୟକ୍ତିଗତ ଭାବରେ କିଛି ସାହାଯ୍ୟ ଧରି ସେଠାକୁ ଯାଇଥାଆନ୍ତି । କେତେକ ଦିନ ସେ ଆସାମରେ ରହିଲେ ଏବଂ ସାହାଯ୍ୟ ବଣ୍ଟନ କଲେ । ସେଠାରୁ ଫେରିଲେ, ମୋର ତାଙ୍କ ସହିତ ଦେଖା ହେଲା । ମୁଁ ତାଙ୍କୁ ପଚାରିଲି, "କ'ଣ ଭାଇ ଆସାମରେ ଆପଣ ତ ଏତେଦିନ ରହିଲେ । ସେଠାରେ ରିଲିଫ୍ ବାଣ୍ଟିବାର କାମ କଲେ । ନିଶ୍ଚୟ କିଛି ଅନୁଭବ ମିଳିଥିବ । ଏବେ ଆମକୁ ଟିକେ ଶୁଣାନ୍ତୁ ତ, ରିଲିଫ୍ କାମ କରିବାକୁ ହେଲେ ଲୋକର କି କି ଗୁଣ ଥିବା ଉଚିତ ?" ତା'ର ଉତ୍ତରରେ ସେ ଗୋଟିଏ ଯାହା କହିଥିଲେ ତାହା ମୁଁ କଦାପି ଭୁଲିପାରିବ ନାହିଁ । ସେ କହିଥିଲେ ଯେ, "ଦୁର୍ଭିକ୍ଷରେ ସାହାଯ୍ୟ କରିବାକୁ ଯାଉଥିବା ଲୋକର ହୃଦୟ ନରମ ନ ହୋଇ କଠିଣ ହେବା ଉଚିତ ।" ମୁଁ ତାଙ୍କୁ କହିଲି, "ମୋ ପକ୍ଷରେ ଏଇଟି ଏକ ଗୂଢ଼ବାକ୍ୟ । ଏହାର ଅର୍ଥ କ'ଣ ଟିକିଏ ମୋତେ ବୁଝାନ୍ତୁ ।" ତହୁଁ ସେ କହିଲେ, "ଯେଉଁ ଲୋକ ସାହାଯ୍ୟ ନେଇକରି ସେମାନଙ୍କ ପାଖକୁ ଯିବ, ତା'ପାଖରେ ତ ସୀମିତ ପରିମାଣରେ ପଦାର୍ଥ ରହିଥିବ । ପୁଣି ଲୋକଙ୍କର ଦୁଃଖ ଦେଖି ହୃଦୟରେ ତା'ର ଦୟା ଆସିବା ସ୍ୱାଭାବିକ । ମାତ୍ର ପ୍ରଥମେ

ଯେଉଁ ଲୋକ ତା ପାଖକୁ ସାହାଯ୍ୟ ମାଗିବା ପାଇଁ ଆସିବ, ସେ ଅନେକ ଦୁଃଖ ବଖାଣିବ । କିନ୍ତୁ ପ୍ରକୃତରେ ସାହାଯ୍ୟ ପାଇବାର ଯୋଗ୍ୟ ଲୋକ ସେ ନୁହେଁ, ଯଦି ପ୍ରକୃତ ଦୁଃଖୀଲୋକଙ୍କୁ ସାହାଯ୍ୟ ଦେବାପାଇଁ ଚାହାନ୍ତି ତାହାହେଲେ ଆମକୁ ଖୋଜି ଖୋଜି ଯାଇ ସେ ଲୋକ ପାଖରେ ପହଞ୍ଚିବାକୁ ପଡ଼ିବ । ନଚେତ୍ ଯେଉଁମାନେ କଣ୍ଢ-ଚୋପି ଜାଣନ୍ତି ସେହିମାନଙ୍କ ପାଖରେ ସାହାଯ୍ୟ ପହଞ୍ଚିବ, ଅଥଚ ପ୍ରକୃତ ଦୁଃଖୀଲୋକକୁ ମିଳିବ ନାହିଁ । ଏଣୁ ଗାଁଟା ସାରା ବୁଲି ଲୋକଙ୍କ ସଙ୍ଗେ ପରିଚୟ କରି ସେମାନଙ୍କ କଥା ଶୁଣି ତା'ପରେ ଯାଇ ପ୍ରକୃତ ଦୁଃଖୀଲୋକ ଯିଏ, ତାକୁ ସାହାଯ୍ୟ ଦେବ । କାରଣ ସେ ତ ନିଜେ ଦୁଃଖୀ ପୁଣି ସାହାଯ୍ୟ କେଉଁଠୁ ମିଳିବ ତାର ଜ୍ଞାନ ମଧ୍ୟ ତାଠାରେ ନାହିଁ । ପୁଣି ସାହାଯ୍ୟ ମାଗିବା ପାଇଁ ଦରଖାସ୍ତ ଲେଖିବାକୁ ବା ନିଜର ଦୁଃଖ ଜଣାଇବାକୁ ତା'ର ଯୋଗ୍ୟତା ମଧ୍ୟ ନାହିଁ ।" ଏଣୁ ଆମକୁ ଏହି ନୀରବ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କ ପାଖରେ ପହଞ୍ଚିବାକୁ ହେବ । ଗ୍ରାମଦାନ ପରେ ସେପରି ଲୋକଙ୍କୁ ଆମେ ସହଜରେ ପାଇ ପାରିବା । ଯେତେବେଳେ ଗାଁଟା ଗୋଟିଏ ପରିବାର ହେବ, ସେତେବେଳେ ସମସ୍ତେ ମିଶି ଗାଁର ଯୋଜନା ପ୍ରସ୍ତୁତ କରିବେ, ଏଣୁ ଗୋଷ୍ଠୀ ଉନ୍ନୟନ କହିଲେ ଯାହା ବୁଝାଯାଏ ସେତେବେଳେ ତାହା କରିବା ସହଜ ହୋଇଯିବ । ମୁଁ ବାରବର୍ଷ ହେଲା ଲୋକମାନଙ୍କୁ ଏହି କଥା କହି ଚାଲିଛି ଯେ ଗୋଷ୍ଠୀ ବୋଲି କୌଣସି ଜିନିଷ ଗ୍ରାମରେ ନାହିଁ । ଗାଁ ଅବଶ୍ୟ ଅଛି କିନ୍ତୁ ଗ୍ରାମ୍ୟ ଭାବନା ଲୋକଙ୍କଠାରେ ନାହିଁ । ଗୃହଆଡ଼େ ଖାଲି ଘର ହିଁ ଘର ରହିଛି । କେହି କାହାର ସୁଖ ଦୁଃଖରେ ଭାଗୀ ନୁହନ୍ତି ଏବଂ ଗାଁରେ ସ୍ୱତନ୍ତ୍ର ପୁଞ୍ଜି ନ ରହିଥିବାରୁ ଗାଁରେ ସ୍ୱତନ୍ତ୍ର ଅସ୍ତିତ୍ୱର ଅନୁଭବ ମିଳୁ ନାହିଁ । ଏଣୁ ଆଜି ଗ୍ରାମକୁ ଗଢ଼ିବା ହିଁ ପ୍ରଥମ କଥା । ଲୋକେ ମୋତେ ପଚାରନ୍ତି ଯେ ଗାଁର ଉନ୍ନୟନ ବା ଗାଁର ନିର୍ମାଣ କାମ କିପରି ହେବ ? ମୁଁ ସେମାନଙ୍କୁ କହେ, "ଗ୍ରାମନିର୍ମାଣ ନୁହେଁ

ଗ୍ରାମ ଗଢ଼ିବା ହିଁ ଆମର ପ୍ରଥମ କାମ । ଆଜି ଯେଉଁଠିବେଳେ ଗ୍ରାମଦାନ କରିବାଦ୍ୱାରା ଗାଁ ଗାଁରେ ଗ୍ରାମସଭା ଗଠିତ ହେଉଛି, ପ୍ରେମର ସହିତ ଲୋକେ ନିଜ ଜମିର କୋଡ଼ିଏ ଭାଗରୁ ଭାଗେ ଭୂମିହୀନମାନଙ୍କୁ ଦେଉଛନ୍ତି ଓ ଗ୍ରାମ ପରିବାରର ରୂପ ଆଙ୍କୁଛନ୍ତି ସେତେବେଳେ ଅସଲ ଗ୍ରାମ ନିର୍ମାଣ କାମ ହେଉଛି ଗୋଷ୍ଠୀ ଉନ୍ନୟନ କର୍ମଚାରୀ ଓ ପଞ୍ଚାୟତବାଲାଙ୍କ ଗ୍ରାମ ନିର୍ମାଣର କାମ ସମର୍ପଣ କରାଯାଇଅଛି । ଆଜି ଗାଁ ବୋଲି ତ କିଛି ନାହିଁ । ସେମାନେ କାହାର ନିର୍ମାଣ କରିବେ ? ପୁଣି ଗ୍ରାମର ଉନ୍ନୟନ ନାମରେ ଖାଲି ଟିକିଏ ରାସ୍ତା ବା ଗୋଟିଏ ଅଧେ ସ୍କୁଲ ତିଆରି କରିଦେଲେ ଗ୍ରାମ ବିକଶିତ ହେବ ନାହିଁ । ଏ ସମ୍ପର୍କରେ ମୋର ଗୋଟିଏ କଥା ମନେ ପଡ଼ୁଅଛି ।

ପରିବାରର ଆଇନ ଗାଁରେ ଚଳିବ—

ଥରେ ଜଣେ ଗାଉଁଲି ସାଧାରଣ ଲୋକ ମୋ ସହିତ କଥାବାର୍ତ୍ତା କରୁଥିଲେ । ମୁଁ ତାଙ୍କୁ ପଚାରିଲି, "ଭାଇ ! ଆପଣଙ୍କର ପିଲାଛୁଆ କେତୋଟି ?" ସେ ମୋତେ କହିଲେ ଯେ ଛଅଟି କିମ୍ବା ସାତଟି ହେବେ । ମୁଁ ତାଙ୍କୁ କହିଲି, "ଆପଣ ତ ପିଲାମାନଙ୍କର ବାପ ଆପଣଙ୍କୁ ସେମାନଙ୍କର ସଂଖ୍ୟା ଜଣାନାହିଁ, ଏ କପରି କଥା ?" ଲୋକଟି ବିଚରା ସାଦାସିଧା ଲୋକ । ବିଶେଷ କିଛି କହିଲେ ନାହିଁ । ସେହିପରି ଆଜି ଗାଁ ଭିତରକୁ ପଶିଗଲେ ଯଦି ପଚାରିବେ ଯେ ଏଠି କେତେ ଘର ଅଛନ୍ତି, ଲୋକେ କହିବେ ଯେ ପଚାଶ ଷାଠିଏଟି ହେବ । ଅର୍ଥାତ୍ ଏ ଘର ସଂଖ୍ୟା ଜାଣିବାରେ ସେମାନଙ୍କର କୌଣସି ସ୍ୱାର୍ଥ ସିଦ୍ଧ ହେବନାହିଁ । ଏ ପ୍ରସଙ୍ଗରେ ମୋର ଆଉ ଗୋଟିଏ ଗପ ମନେ ପଡ଼ୁଛି । ସଂସ୍କୃତରେ ତାକୁ 'ଗର୍ଦ୍ଦଭକେଶ ଗଣନା ନ୍ୟାୟ' ବୋଲି କୁହା ଯାଇଅଛି । ସେଥିରେ ଅଛି ଯେ, ଜଣେ ଗଣିତଜ୍ଞ

ପଣ୍ଡିତ ଗୋଟିଏ ଗାଁ ଭିତରକୁ ଗଲେ । ସେ ଲୋକଙ୍କୁ କହିଲେ ଯେ, ମୁଁ ଅନେକ ଗଣିତ ଜାଣିଛି । ତହୁଁ ଲୋକେ ତାଙ୍କୁ ପଚାରିଲେ, "ଆପଣ ଏ ଗଧ ଦେହରେ ଥିବା ସବୁ ଲୋମଗୁଡ଼ିକ ଗଣି ଦେଇ ପାରିବେ ?" ପଣ୍ଡିତ ମହାଶୟ କହିଲେ— ହଁ ଏ ଗଧର ଲୋମଗୁଡ଼ିକ ଗଣିପାରିବି କିପରି ?" କାରଣ ଗଧର ଲୋମ ସହିତ ପଣ୍ଡିତଙ୍କ ଗଣିତଚର୍ଚ୍ଚାର କେବେ ସମ୍ପର୍କ ସ୍ଥାପିତ ହୋଇନାହିଁ । ସେହିପରି ଆଜିକାଲି ଜନଗଣନାବାଲା ଗାଁର ସବୁଘରେ ଏ ଯେଉଁ ନମ୍ବର ଲଗାଇଦେଇ ଯାଉଛନ୍ତି ଗାଁ ଲୋକେ ମନେ କରୁଛନ୍ତି ଯେ ଏହା ସହିତ ତାଙ୍କର କିଛି ସମ୍ପର୍କ ନାହିଁ । ଗରଜ ପଡ଼ିଛି ବୋଲି ହୁଏତ ସରକାରୀ ଜନଗଣନାବାଲା ଘରଗୁଡ଼ିକର ହିସାବ ନେଉଛନ୍ତି । ଗ୍ରାମଦାନ କରିବାଦ୍ୱାରା, ଗ୍ରାମ ପରିବାର ଗଢ଼ିବାଦ୍ୱାରା ପ୍ରଥମ କରି ଲୋକଙ୍କ ମନରୁ ଏହି ଭାବନାକୁ ଆମେ ଦୂରେଇ ଦେଉଛୁ ।

ପରିବାର ଭିତରେ କ'ଣ ହୋଇଥାଏ ? ସେଠାରେ କେବଳ ସଂଖ୍ୟାର ହିସାବ ଥାଏ ନାହିଁ । ପରସ୍ପର ଭିତରେ ସ୍ନେହସୌହାର୍ଦ୍ଦ୍ୟର ସମ୍ବନ୍ଧ ରହିଥାଏ । ସେଠାରେ ଏ କଥା ହୁଏ ନାହିଁ ଯେ, 'ଯଦି ଯଥେଷ୍ଟ ଖାଦ୍ୟ ନାହିଁ, ତେବେ ଯେଉଁ ଲୋକ ରୋଜଗାର କରୁଛି ତାକୁ ପ୍ରଥମେ ଖାଇବାକୁ ଦିଆଯାଉ । ସମସ୍ତେ ମିଶିକରି ଉତ୍ପାଦନ ବଢ଼ାନ୍ତୁ । ଯେତେବେଳେ ଉତ୍ପାଦନ ବଢ଼ିବ, ସେତେବେଳେ ଯାଇ ସବୁ ଲୋକ ପେଟ ପୂରା ଖାଦ୍ୟ ପାଇବେ । ତା'ନ ହେଲେ ବର୍ତ୍ତମାନ ଯେଉଁମାନେ ରୋଜଗାର କରୁଛନ୍ତି କେବଳ ସେମାନେ ଖାଆନ୍ତୁ । ବାକୀ ଲୋକ ସବୁ ସେତେଦିନ ଯାଏ ଉପାସ ରହନ୍ତୁ । ବରଂ ଏହାର ଓଲଟା କଥା ଘର ଭିତରେ ହୋଇଥାଏ । ପରିବାରର ଯେଉଁ ଲୋକ ରୁଗ୍ଣ, ଦୁର୍ବଳ, ତାହା ପ୍ରତି ସମସ୍ତେ ପ୍ରଥମେ ଧ୍ୟାନ

ହୋଇ ଥାଆନ୍ତି । ସେ ରୋଜଗାର କରୁଛନ୍ତି କି ନାହିଁ ଏ କଥା ବିଚାରକୁ ଆସେନ୍ତି ନାହିଁ । ଯାହାର ଯେତିକି ଲୋଡ଼ା ସେ କାମ କରୁ ବା ନ କରୁ ପରିବାର ଭିତରେ ତାକୁ ସେତିକି ମିଳିଥାଏ । ପରିବାର ଭିତରେ ସରକାରୀ ଆଇନ ବଦଳରେ ସ୍ନେହର ଆଇନ ଚାଲିଥାଏ । ତେଣୁ କଳି ଏପରି ଘଟେ । ଆଜି ଆମେ ଗ୍ରାମଦାନ ମାଧ୍ୟମରେ ଗାଁ ଭିତରେ ସ୍ନେହଯୁକ୍ତ ଗ୍ରାମ ପରିବାର ଗଢ଼ିବାକୁ ଚାହୁଁଛୁ । ଏଣୁ ଆମର ତିନି ଗୋଟି ପ୍ରସ୍ତାବ ରହିଅଛି ।

ଗାଁ ପାଇଁ ଯୋଜନା—

୧ । ଗାଁରେ କେହି ଭୂମିହୀନ ରହିବେ ନାହିଁ । ଭୂମି ମାଲିକମାନେ ସ୍ନେହର ସହିତ ନିଜ ଭୂମିର କୋଡ଼ିଏ ଭାଗରୁ ଏକ ଭାଗ ଗ୍ରାମର ଭୂମିହୀନମାନଙ୍କ ଲାଗି ଦାନ କରିବେ ।

୨ । ବାକି ଊଣେଇଶ ଭାଗ ଜମି ଲୋକେ ସେମାନଙ୍କ ପାଖରେ ରଖିବେ । ତାହାର ମାଲିକାନା ସେ ଗ୍ରାମସଭା ହାତକୁ ଯିବ । ଫଳରେ ଜମି ବିକ୍ରି ହୋଇ ପାରିବ ନାହିଁ କିମ୍ବା ବନ୍ଧକ ରଖା ଯାଇ ପାରିବ ନାହିଁ । ସେମାନେ ଚାଷ କରିବେ ଏବଂ ଫସଲ ଫଳାଇ ଖାଇବେ । ଗାଁ ଜମି ଗାଁର ହୋଇ ରହିବ । ମାତ୍ର ଯଦି ଗାଁ ଜମିର ମାଲିକ ଯାଇ ସହରରେ ବସନ୍ତି ତାହାହେଲେ ଗାଁ ପାଇଁ ଯୋଜନା ହୋଇପାରିବ କିପରି ? ଯଦି ଭାରତବର୍ଷର କେତେକ ଅଞ୍ଚଳ ଫ୍ରାନ୍‌ସକୁ, କେତେକ ଅଞ୍ଚଳ ଆମେରିକାକୁ ଓ କେତେକ ଅଞ୍ଚଳ ଇଂଲଣ୍ଡକୁ ବିକ୍ରି କରାଯାଏ, ତାହାହେଲେ ଭାରତର ସ୍ୱରାଜ୍ୟ ରହି ପାରିବ କିପରି ? ତେଣୁ ଗାଁ ଜମିର କେତେକ ମାଲିକ କଲିକତାରେ, କେତେକ ମାଲିକ ଭୁବନେଶ୍ୱରରେ ଓ କେତେକ ମାଲିକ କଟକରେ ରହୁଥିଲେ ଗ୍ରାମସ୍ୱରାଜ୍ୟ ହୋଇ ପାରିବ ନାହିଁ । ଗାଁ ଜମି

ଗାଁ ବାହାରକୁ ଦେବା ବା ବିକ୍ରି କରିବା କଥାକୁ ଗ୍ରାମଦ୍ରୋହ ବୋଲି ମନେ କରାଯିବା ଉଚିତ । ଏ ପ୍ରକାରର ଅନୁଭବ ଅଜି ଆମ ଦେଶର ଲୋକଙ୍କ ଭିତରେ ନାହିଁ ।

ଇତିହାସରେ ମିର୍ଜାଫରଙ୍କୁ ଆମେ ଦେଶଦ୍ରୋହୀ ବୋଲି କହୁଥାଉଁ । କିନ୍ତୁ ତାଙ୍କର ଅପରାଧ କଣ ଥିଲା ? ଯୁଦ୍ଧରେ ପରାସ୍ତ ହୋଇ ସେ ଇଂରେଜମାନଙ୍କୁ ପଇସା ଲୋଭରେ ଓ ସେମାନଙ୍କର ସାହାଯ୍ୟ ଆଶାରେ ବଙ୍ଗଳାର କେତେକ ଜମି ବିକ୍ରି କରିଦେଇ ଥିଲେ । ପଲାସୀ ଯୁଦ୍ଧରେ କ୍ଲାଇବଙ୍କଠାରୁ ସାହାଯ୍ୟ ନେଇ ମିର୍ଜାଫର ଋଣଗ୍ରସ୍ତ ହୋଇ ପଡ଼ିଲେ । ଶେଷରେ ତାକୁ ସୁଝି ନପାରି ଜମି ପରେ ଜମି ହରାଇ ବସିଲେ ଓ ଇଂରେଜମାନେ ଏହାର ସୁବିଧା ନେଲେ । ଅତଏବ ଯଦି ଦେଶର କିଛି ଅଂଶ ବିକ୍ରି କରିବା ଫଳରେ ମିର୍ଜାଫର ଆମ ଆଖିରେ ଦେଶଦ୍ରୋହୀ ବୋଲି ଜଣା ପଡ଼ନ୍ତି, ତେବେ ଗାଁ ଜମିକୁ ଗାଁ ବାହାରକୁ ପଠାଇବା ଗ୍ରାମ ଦ୍ରୋହ ହେଉ ନାହିଁ କାହିଁକି ? ଯେତେବେଳେ ଏ ପ୍ରତ୍ୟୟ ଆମ ଦେଶର ଲୋକଙ୍କ ଭିତରେ ଆସିବ ଯେ ଆଉ ଯାହା ହେଉନା କାହିଁକି ଆମେ କଦାପି ଗାଁର ଜମିକୁ ବିକ୍ରି କରିବୁ ନାହିଁ । ସେତେବେଳେ ଲୋକଙ୍କ ଭିତରକୁ ଏକ ନୂତନ ଶକ୍ତି ଆସିବ । ଆଉ ଚୀନ୍ କ'ଣ କରୁଛି ? ଭାରତର କେତେକ ପାହାଡ଼ିଆ ଜମି ଉପରେ ନିଜର ଅଧିକାର ସାବ୍ୟସ୍ତ କରୁଛି । ମାତ୍ର ତାକୁ ଆକ୍ରମଣ ବୋଲି ବିଗୁରି ଆମେ ସହ୍ୟ କରି ପାରୁନାହିଁ । ଠିକ୍ କଥା । ଯଦି ଦେଶର ଜମି ଅନ୍ୟ ହାତକୁ ଯିବାଦ୍ୱାରା ଆମେ ନିଜକୁ ଅପମାନିତ ବୋଲି ମନେ କରୁଥାଉ, ତେବେ ଗାଁର ଜମି ଗାଁ ବାହାରକୁ ଚାଲିଯିବା ଫଳରେ ଆମ ଭିତରେ ଅପମାନର ବୋଧ ଆସିବା ଉଚିତ । ମାତ୍ର ଗାଁର ଜମି ଗାଁ ବାହାରକୁ ଚାଲି ଯାଉଛି । ଅଥଚ ଅଣ୍ଡା ମୁଣ୍ଡରେ ବସି

ଆମେ ସେ କଥା ଦେଖୁନୁଁ । ଏହାର ପରିଣତି ସ୍ୱରୂପ ଦିନକୁ ଦିନ ଗାଁ ଗୁଡ଼ିକ ଭାଙ୍ଗି ଭାଙ୍ଗି ଚାଲିଛନ୍ତି ଏବଂ ଗାଁ ଭିତରେ କୌଣସି ସ୍ୱତନ୍ତ୍ର ଯୋଜନା ସମ୍ଭବ ହୋଇପାରୁ ନାହିଁ । ଏଣୁ ଆଜ ଗୋଟିଏ କଥା ବୁଝେଇବା ଆବଶ୍ୟକ ଯେ ଗାଁ ଜମି ଗାଁ ବାହାରକୁ ଯିବା ଉଚିତ ନୁହେଁ ।

ପୁଣି ତୃତୀୟ କଥା ହେଲା ଯେ ପ୍ରତିବର୍ଷ ଫସଲର ଅଂଶ ପ୍ରତ୍ୟେକେ ଗ୍ରାମସଭାକୁ ଦେବେ । ଗାଁରେ ଶିଳ୍ପ ଧନ୍ଦା ବଢ଼ାଇବା ପାଇଁ ଏହାର ଉପଯୋଗ ହେବ । ସେଥିରେ ସରକାର ମଧ୍ୟ ସାହାଯ୍ୟ କରିବ । ଏଇ ତିନୋଟିଯାକ କଥା ହେଲା ଗ୍ରାମ ଗଠନର ଲକ୍ଷଣ । ଗାଁରେ ଯେଉଁ ଗ୍ରାମସଭା କରାଯିବ, ସେଥିରେ ମାଲିକ ଗୋଷ୍ଠୀର ଲୋକ ମଧ୍ୟ ରହିବେ । ଗାଁକୁ ବିକଶିତ କରିବାଲାଗି ସେମାନଙ୍କର ସହାୟତା ମିଳିବ । ତେଣିକି ବିକାଶ ଯୋଜନା ଠିକ୍ ଚାଲିବ । ଖେଳିବା ପାଇଁ ପଡ଼ିଆ ଥିଲେ ଯିନା କ୍ରିକେଟ ଖେଳିବ । ଯଦି ମୂଳରୁ ଖେଳ ପଡ଼ିଆ ନ ଥାଏ ତେବେ କ୍ରିକେଟ କେଉଁଠି ଖେଳିବେ ?

ଯୋଜନା ବାବଦକୁ ଭାରତ ସରକାର ଅନେକ ଟଙ୍କା ଖର୍ଚ୍ଚ କରୁଛନ୍ତି । ତାହା ସତ୍ତ୍ୱେ ଏବେ ଲୋକସଭାରେ ପ୍ରଶ୍ନ ଉଠୁଛି ଯେ ଆମ ଦେଶରେ ଲୋକଙ୍କର ଦୈନିକ ହାରାହାରି ଆୟ କେତେ ! କେହି ତିନି ଅଣା କହିଲା ବେଳକୁ ଆଉ କିଏ ଟ°୫୮୦ କିଏ ଟ°୮୬ ବୋଲି କହୁଛି । କିନ୍ତୁ ଏଭଳି ଆଲୋଚନା ଆମପ୍ରତି ଆଦୌ ଶୋଭାଦାୟକ ନୁହେଁ । ଯଦି ଚୀନ୍‌ର ପ୍ରତିରୋଧ ଆମେ କରିବା, ତାହାହେଲେ ଏ ପ୍ରଶ୍ନର ଉତ୍ତର ଆମକୁ ଖୋଜି ବାହାର କରିବାକୁ ପଡ଼ିବ । ଦେଶରେ ଏ ଯେଉଁ ଦାରିଦ୍ର୍ୟ ରହିଛି, ତା'ର ନିରାକରଣ ପାଇଁ ଏଇଆ କର୍ ଯାଉଛି ରେ ଯେ ଗାଁ ଗାଁର ଲୋକେ

ମିଶଙ୍କୁ ନିଜେ ଉଠାଇବେ । ସମଗ୍ର ଦେଶର ବ୍ୟବସ୍ଥା ସରକାର କରିବାକୁ ଯିବାବେଳେ ତା ଉପରେ ଆମେ ଯେପରି ହସ୍ତକ୍ଷେପ କରୁନାହୁଁ, ସେହିପରି ଗାଁ ନିଜ ବ୍ୟବସ୍ଥା ନିଜେ କରିବାକୁ ନେଲା-ବେଳେ ଅନ୍ୟ କେହି ତା ଉପରେ ହସ୍ତକ୍ଷେପ କରିବେ ନାହିଁ । ସାରା ଦେଶ ପାଇଁ ଯେତେ ପ୍ରକାରର ଯୋଜନା ହେଉଛି ଗୋଟିଏ ଗୋଟିଏ ଗାଁର ମଧ୍ୟ ସେତିକି ପ୍ରକାରର ଯୋଜନା ହେବ । ଏ ହେଲା ଗ୍ରାମଦାନର ସାର କଥା ।

ଏବେ ମୁଁ ଯେଉଁଆଡ଼େ ବୁଲୁଛି, ସେହିଆଡ଼େ କେବଳ ଦିନକୁ ଗୋଟିଏ ଦୁଇଟି ଗ୍ରାମଦାନ ହେଉଛି । ଏହି ହିସାବରେ ଦେଖିବାକୁ ଗଲେ ବର୍ଷରେ ତିନିଶହ କି ସାଢ଼େ ତିନିଶହ ଗାଁ ଗ୍ରାମଦାନ ହେବ । ଏ ଦେଶରେ ପାଞ୍ଚଲକ୍ଷ ଗାଁ ଅଛି । ଏହି ଗତିରେ ଗଲେ ସେ ସବୁଙ୍କୁ ଗ୍ରାମଦ ହେବା ପାଇଁ ତିନିଶହ ବର୍ଷ ଲାଗିବ ।

ପଣ୍ଡିତ ନେହେରୁଙ୍କ ନିର୍ଦ୍ଦେଶରେ ସାରା ଦେଶରେ ନିର୍ବାଚନ ଗୋଟାଏ ସପ୍ତାହ ଭିତରେ ଶେଷ ହୋଇଯାଇଛି । ଯଦି ସେ ପଦ-ଯାତ୍ରାରେ ବାହାରନ୍ତେ ଏବଂ ପ୍ରତ୍ୟେକ ଦିନ ଗୋଟାଏ ଦୁଇଟି ଗାଁରେ ନିର୍ବାଚନ ହୋଇ ଚାଲନ୍ତା, ତେବେ କେତେ ବର୍ଷ ଏଥିପାଇଁ ଲାଗିଯାଆନ୍ତା ? ଆଜ ପତ୍ର ବତ୍ସର ପଢ଼ୁଛି ଯେ ଏକା ଦିନକେ ସାରା ଦେଶରେ ନିର୍ବାଚନ କିପରି ଶେଷ ହେବ । ସୁତରାଂ ଯଦି ଆପଣମାନେ ଭାବୁଥାଆନ୍ତି ଯେ ଗ୍ରାମଦାନ ଗୋଟିଏ ଭଲ କଥା, ତେବେ ଏଥିରେ ସମସ୍ତେ ଏକାବେଳକେ ଲାଗିଯିବା ଉଚିତ ।

ଗ୍ରାମଦାନ ସମସ୍ତଙ୍କ ସମର୍ଥନ ପାଇଛି—

ଗ୍ରାମଦାନ କଥାକୁ ଆମେ ଖାଲି ଠିକ୍ ବୋଲି କହିଲେ ଚଳିବ ନାହିଁ । ହୁଏତ ଆମର ବିଚାର ଭିତରେ କେଉଁଠି ତ୍ରୁଟି ରହିଯାଇ ପାରେ । ଏଣୁ ସେପ୍ଟେମ୍ବର ତେଇଶି—ଯେଉଁଦିନ କି ଦିନ ରାତି ଆମ ଦେଶରେ ସମାନ, ସେହିପରି ଏକ ଦିନରେ, ନଅ ବର୍ଷ ତଳେ ସବୁ ରାଜନୈତିକ ଦଳର ନେତାଙ୍କୁ ଗ୍ରାମଦାନ କଥା ଉପରେ ବିଚାର କରିବା ପାଇଁ ଆମେ ନିମନ୍ତ୍ରଣ କଲୁ । ସେମାନେ ସମସ୍ତେ ପ୍ରସ୍ତାବ କଲେ ଯେ, 'ଭୂଦାନ ଗ୍ରାମଦାନ ଆନ୍ଦୋଳନ ଦ୍ୱାରା ଭାରତବର୍ଷର ନୈତିକ ଏବଂ ଭୌତିକ—ଏ ଉଭୟ ପ୍ରକାରର ଉନ୍ନତି ପାଇଁ ସାହାଯ୍ୟ ମିଳିବ । ଏଣୁ ଆମେ ଏହାକୁ ଉତ୍ସାହର ସହିତ ସମର୍ଥନ ଜଣାଉଛୁ ଏବଂ ଆଶା କରୁଛୁ ଯେ ଭାରତବର୍ଷର ଲୋକେ, ଏ କାମକୁ ପୂରା କରିବେ । ସେହି ଦିନଠୁଁ ମୁଁ ନିଶ୍ଚିନ୍ତ ହୋଇଗଲି । ଭାବିଲି ଯେ ଦେଶର ସବୁ ନେତାଙ୍କର ବୁଦ୍ଧି ଯେଉଁ କଥାକୁ ଠିକ୍ ବୋଲି କହୁଛି, ତାହା ନିଶ୍ଚିତରୂପେ ଠିକ୍ । କାରଣ ଏ କଥା ତ କଦାପି ସମ୍ଭବ ନୁହେଁ ଯେ, ଦୁନିଆର ସବୁ ଲୋକଙ୍କ ମୁଣ୍ଡ ଏକାବେଳକେ ବିଗିଡ଼ି ଯିବ । ମାତ୍ର ନେତାମାନେ ଯେଉଁ କଥାକୁ ଯଥାର୍ଥ ବୋଲି ସ୍ୱୀକାର କଲେ, ସେ କଥା ଦେଶରେ ହେବା ଉଚିତ୍ । ମୁଁ ଏହାଠାରୁ ଅଧିକ ଆଉ କଣ କରି ପାରିଥାନ୍ତି ? ମୋ ଦ୍ୱାରା ଯେତିକି ସମ୍ଭବ ତାହା ମୁଁ କରି ଚାଲିଛି ଓ ବାରବର୍ଷ ହେଲି ବୁଲୁଛି । ନେତାମାନେ ସେମାନଙ୍କ ଅଭିମତରେ ଯଦି ଭୂଦାନ ଗ୍ରାମଦାନ କାମର କୌଣସି ତ୍ରୁଟି ଦେଖାଇ ଥାଆନ୍ତେ ତାହାହେଲେ ଆମେ ନିଜକୁ ସୁଧାରି ନେଇ ଥାଆନ୍ତୁ କିମ୍ବା ନିଜର କାର୍ଯ୍ୟକ୍ରମରେ ପରିବର୍ତ୍ତନ ଘଟାଇ ଥାଆନ୍ତୁ । ମାତ୍ର ଏ କାମକୁ ସେମାନେ ଉତ୍ସାହଜନକ ସମର୍ଥନ ଦେଲା ପରେ ସୁଦ୍ଧା ଓ ମୁଁ ଗତ

ବାରବର୍ଷ ଧରି ନିରନ୍ତର ବୁଲୁଥିଲେ ମଧ୍ୟ ଯଦି ଏ କାମ ଆଜି ଆଗକୁ ନ ବଢ଼େ, ତେବେ ସେ ଦାୟିତ୍ୱ ମୋର ନୁହେଁ । କାରଣ ମୁଁ ହେଉଛି ମୁକ୍ତ ଲୋକ ।

ଯେଉଁମାନେ ଦେଶର ନେତା ହୋଇ ଅଛନ୍ତି, ଏ କାମକୁ ପୂରଣ କରିବାର ଦାୟିତ୍ୱ ସେହିମାନଙ୍କର । ମୁଁ ଦେଶର ନେତା ନୁହେଁ କି ନିର୍ବାଚନରେ ଲଢ଼ିବାକୁ ଯାଉ ନାହିଁ । ମାତ୍ର ଦେଶର ସଚ୍ଚୋଟ ନେତା ଯେଉଁମାନେ, ସେମାନଙ୍କ ପ୍ରସ୍ତାବ ସତ୍ତ୍ୱେ ଯଦି କାମ ନ ହେଉଛି, ତାହାହେଲେ ମୋତେ କେହି ଦୋଷୀ କରିପାରିବେ ନାହିଁ । ଯଦି ସେମାନେ ଏହାକୁ ଠିକ୍ ନୁହେଁ ବୋଲି କହି ଥାଆନ୍ତେ ବା ସମର୍ଥନ ନ କରି ଥାଆନ୍ତେ, ତାହାହେଲେ ନିଜସ୍ୱ ଦାୟିତ୍ୱ ବୋଲି ମୁଁ ଏହାକୁ ସ୍ୱୀକାର ଥାଆନ୍ତି । ମାତ୍ର ମୁଁ ତ ମୋ କାମରେ କେବେ ଢିଲା କରିନାହିଁ । ମୋ କାମ ମୁଁ କରୁଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର କିଛିଦିନ ତଳେ ପ୍ରଦେଶର ଲୋକଙ୍କୁ ନିବେଦନ ଜଣାଇ କହିଲେ ଯେ 'ଏଠାକାର ସବୁ ଗାଁ ଗ୍ରାମଦାନୀ ଗାଁ ହେଉ । ଗ୍ରାମଦାନ କରିବାଦ୍ୱାରା କାହାରି କିଛି କ୍ଷତି ହେବ ନାହିଁ । ପୁଣି ସରକାର ମଧ୍ୟ ସେହି ଗାଁମାନଙ୍କୁ ପ୍ରଥମେ ସାହାଯ୍ୟ ଦେବେ ।' ଏଭଳି ପରିସ୍ଥିତିରେ ସରକାରୀ କର୍ମଚାରୀମାନେ, ଓ ପଞ୍ଚାୟତ ସ୍ତରର କର୍ମୀ ବୃନ୍ଦ, ଯଦି ଏଥିରେ ସହଯୋଗ ନ କରିବେ, ତାହାହେଲେ ଏଭଳି ଏକ ନୈତିକ ଆନ୍ଦୋଳନ ଦୁର୍ବଳ ହୋଇପଡ଼ିବ, ଲୋକଙ୍କ ନିକଟରେ ଏହାର ବିଫଳତା ପାଇଁ ମୋତେ ଜବାବ ଦେବାକୁ ପଡ଼ିବ ନାହିଁ । ଜବାବ ଆପଣମାନଙ୍କୁ ଦେବାକୁ ପଡ଼ିବ ।

ବିବାହିତା ଝିଅ କଥା ବାପକୁ ଲାଗେନାହିଁ—

ଝିଅଟିଏ ଜନ୍ମ ହେଲା ଘରଠାରୁ ବିବାହ ଦିନ ପର୍ଯ୍ୟନ୍ତ ବାପଘରେ ଥାଏ ଓ ଝିଅର ଚିନ୍ତା ବାପକୁ ଲାଗି ଥାଏ । କାରଣ ଝିଅକୁ ଜନ୍ମ ଦେଇଥିବା ହେତୁ ଏ ଦାୟିତ୍ୱ ଆସି ବାପ ଉପରେ ପଡ଼େ । କିନ୍ତୁ ତାକୁ ବିବାହ ଦେଇ ଦେଲା ପରେ, ଅର୍ଥାତ୍ ଅନ୍ୟ ଜଣେ ସେ ଝିଅକୁ ସ୍ୱୀକାର କରି ନେଲା ପରେ, ବାପର ଆଉ କିଛି ଦାୟିତ୍ୱ ଆଉ ତା'ପାଇଁ ନ ଥାଏ । ସେହିପରି ଏକଦା ଗ୍ରାମଦାନ କଳ୍ପନାର ପିତା ହିସାବରେ ମୋର ଦାୟିତ୍ୱ ଥିଲା । କିନ୍ତୁ ଯେଉଁ ଦିନଠାରୁ ଅନ୍ୟମାନେ ଏହି ବିଚାରକୁ ଗ୍ରହଣ କରି ନେଇ ସାରିଲେଣି, ସେହିଦିନଠାରୁ ଏହାର ଦାୟିତ୍ୱ ମୋ ଉପରେ ଆଉ ନାହିଁ । କାରଣ ଝିଅ ବିଭା ହୋଇଗଲା ପରେ, ତା ପାଇଁ ସ୍ୱାମୀ ସିନା ଚିନ୍ତା କରିବ, ବାପ ଚିନ୍ତା କରିବ କାହିଁକି ? ଏଣୁ ଏ କାମ ଆପଣମାନଙ୍କର ବୋଲି ବୁଝନ୍ତୁ । ଆପଣମାନେ ସରକାରଠାରୁ ଦରମା ନେଉନ୍ତୁ ମଧ୍ୟ ଭୂଦାନ ଗ୍ରାମଦାନର କାମ କରନ୍ତୁ ।

ଗ୍ରାମଦାନ ମଧ୍ୟ ଦେଶରକ୍ଷା କରିବ—

ଆଉ ଏକ କଥା ମୁଁ କହିବି । ମହୀଶୂର ନିକଟବର୍ତ୍ତୀ ଏଲୱାଲଠାରେ ଦେଶର ନେତାମାନଙ୍କର ଦୁଇଦିନବ୍ୟାପୀ ଏଇ ଯେଉଁ ସମ୍ମିଳନୀ ହେଲା । ସେଥିରେ ମୁଁ ସେମାନଙ୍କ ଆଲୋଚନାରେ ବିଶେଷ ଭାଗ ନେଇ ନାହିଁ । କେବଳ ପ୍ରଥମେ ଗ୍ରାମଦାନର ତାତ୍ପର୍ଯ୍ୟ ବିଷୟରେ ମୁଁ ଗୋଟିଏ ଭାଷଣ ଦେଇଥିଲି । ତାହା ଭିତରେ ମୁଁ କହିଥିଲି ଯେ ଗ୍ରାମଦାନ ହେଉଛି ଏକ ପ୍ରତିରକ୍ଷା ବ୍ୟବସ୍ଥା । ସେତେବେଳେ ଚୀନ୍ ସଙ୍କଟ ଆମ ଆଗରେ ନ ଥିଲା । ହଁ, ଦୁଇ ଦେଶ ଭିତରେ କାଗଜ ଉପରେ ଆଲୋଚନା ଚାଲିଥିଲା । ହୁଏତ ଆଜିପରି ଏକ ସଂଘର୍ଷମୂଳକ ପରିସ୍ଥିତି ଦେଖା ଦେବ

ବୋଲି ଜଣା ନ ଥିଲା । ମାତ୍ର ମୁଁ ଜାଣିଥିଲି ଯେ ଭାରତ ଏକ ବିପଦଜନକ ସ୍ଥିତିରେ ଅଛି । ଏହାର ଗୃହପଟରେ ଯେଉଁ ପ୍ରକାରର ଚଳଣ ଓ ଚିନ୍ତାଧାରା ଚାଲିଛି, ତା' ଭିତରେ ସେ ହେଉଛି ନିଜ ଢଙ୍ଗର ଏକ ଦେଶ । ଏଣୁ ତାକୁ ସତର୍କ ସାବଧାନ ରହିବାକୁ ହେବ । ଏଭଳି ଦୃଷ୍ଟିକୋଣ ମୋର ଥିଲା ଓ ଏଥିପାଇଁ ଗ୍ରାମଦାନର ବିଚାରକୁ ମୁଁ ଦେଶରକ୍ଷାର ବ୍ୟବସ୍ଥାରୂପେ ସେତେବେଳେ ସୁଦ୍ଧା ସୂଚାଇ ଥିଲି । ଆଜି ସେ କଥାକୁ ଆପଣମାନଙ୍କ ଆଗରେ ପୁଣି ଥରେ ଦୋହରାଉଛି ।

## ଆଧୁନିକ ଯୁଗରେ ଦୁଇଟି ରଣକ୍ଷେତ୍ର—

ଆମ ଆଗରେ ଆଜ ସଂଘର୍ଷ ଠିଆ ହୋଇଛି । ଏଥିରେ ଜୟ କରିବାକୁ ହେଲେ ଆମକୁ ଆମର ରଣ କ୍ଷେତ୍ରପରି ଆର୍ଥନୀତିକ କ୍ଷେତ୍ରକୁ ମଧ ମଜବୁତ୍ କରିବାକୁ ହେବ । ଚୀନ୍‌ର ଲୋକେ ଏକ ଆଦର୍ଶବାଦ ଠିଆକରି ତଦନୁସାରେ କାମ କରୁଛନ୍ତି । ନିଜ ଢଙ୍ଗରେ ସାମ୍ୟବାଦର ନମୁନା ସେମାନେ ଦୁନିଆ ଆଗରେ ଯେପରି ଭାବରେ ଉପସ୍ଥାପିତ କଲେ ତାହାର ଯଥାର୍ଥ ଜବାବ ଆମକୁ ଦେବାକୁ ପଡ଼ିବ । ଏଥିପାଇଁ ଖାଲି ଯୁଦ୍ଧକ୍ଷେତ୍ରକୁ ସେନା ପଠାଇ ଦେଲେ ଚଳିବ ନାହିଁ ।

ଧରନ୍ତୁ, ସେଠାରେ ଆମେ ବିଜୟୀ ହେଲେ, କିନ୍ତୁ ଏଣେ ଚୀନ ଆସି ଗାଁରେ, ଗାଁରେ, ପ୍ରତ୍ୟେକର ହୃଦୟରେ ଜାଗା ମାଡ଼ି ବସିବ । ପଦାରୁ ଦେଖିଲେ ହୁଏତ ଆମେ ବିଜୟୀ ବୋଲି ଜଣା ଯିବା । କିନ୍ତୁ ଆମଭିତରେ ସେମାନେ ଆମକୁ ଆକ୍ରମଣ କରିଥିବେ । ଏଣୁ ସାମ୍ୟବାଦର ଯେଉଁ ପ୍ରଶ୍ନବାଚୀ ସେମାନେ ଆମ ଆଗରେ ରଖିଛନ୍ତି, ତାହାର ସମ୍ୟକ୍ ଉତ୍ତର ଦେବାଛଡ଼ା ଆମର ଅନ୍ୟଗତି ନାହିଁ । ଆନନ୍ଦର କଥା ଯେ ଚୀନ୍‌କୁ ସାମ୍ୟବାଦର

ଉତ୍ତର ଦେବାପାଇଁ ଆମ ପାଖରେ ମସଲା ଅଛି । ଚୀନ୍ ସହିତ ଆମର ସମ୍ପର୍କ ବହୁ ପୂର୍ବକାଳରୁ ରହି ଆସିଛି ଓ ଆଗକୁ ଅନେକ ଯୁଗ ପର୍ଯ୍ୟନ୍ତ ରହିବ ମଧ୍ୟ । ପୂର୍ବେ ଦୁଇ ଦେଶ ମଝିରେ ହିମାଳୟ ପର୍ବତ ଠିଆ ହୋଇଥିଲା ଓ ତାହା ଦୁଇ ଦେଶ ଭିତରର ସମ୍ପର୍କକୁ ଅଟକାଇ ରଖିଥିଲା । ଆଜି ବି ହିମାଳୟ ପର୍ବତ ତା ନିଜ ସ୍ଥାନରେ ରହିଛି । ମାତ୍ର ଆଜି ବିଜ୍ଞାନ ଯୁଗରେ ସେ ଖୁବ୍ ଛୋଟ ହୋଇ ଯାଇଛି । ମଣିଷ ଦଶ ମିନିଟ୍ ଭିତରେ ତାକୁ ଲଙ୍ଘି ପାରୁଛି । ଏବେ ଯେତେବେଳେ ଉଡ଼ାଜାହାଜର ଯୁଗ ଆସିଲାଣି, ସେତେ-ବେଳେ ହିମାଳୟ ଆଉ କ'ଣ କରିବ ? ଏଣୁ ଉଭୟ ଦେଶର ସମ୍ପର୍କ, ଚୀନ୍ ଓ ଭାରତର ବନ୍ଧୁତା ଯୁଗ ଯୁଗ ଧରି ରହିବ । ଆଜି ଯୁଦ୍ଧ ହେଉନାହିଁ । କିନ୍ତୁ ବଦଳରେ କାଲି ଚୀନର ହାତୀ ଯାଉ ହାତକୁ ଆସିବ ତ ସେ ଯୁଦ୍ଧ କରିପାରେ । ଯେତେଦିନଯାଏ ଉଭୟ ଦେଶ ଭିତରେ ଭଲ ସମ୍ପର୍କ ସ୍ଥାପିତ ହୋଇନାହିଁ, ସେ ପର୍ଯ୍ୟନ୍ତ ଆମେ ଆଜିର ପରିସ୍ଥିତି ପ୍ରତି ଆଖି ବୁଜି ଦେଇପାରିବା ନାହିଁ । ସୈନ୍ୟ ଶକ୍ତିଦ୍ୱାରା କିଛି ଦିନ ପାଇଁ ହୁଏତ ଯୁଦ୍ଧକୁ ଚପାଇ ରଖା ଯାଇପାରେ । କିନ୍ତୁ ଆଜି ଯେଉଁଭଳି ଭାବରେ ବଳ କଷାକଷି ଚାଲିଛି, ସେଥିରେ ଆମେ ସବୁଦିନ ପାଇଁ ଯୁଦ୍ଧକୁ ଟାଳି ଦେଇ ପାରିବା ନାହିଁ । ଆମେ ସୈନ୍ୟଶକ୍ତିରେ ଆଗକୁ ବଢ଼ି ଯିବ ପାଇଁ ଚେଷ୍ଟା କରିବା ତ ସେମାନେ ଆମ ଦେଖାଦେଖି ନିଜର ସୈନ୍ୟବଳ ବଢ଼ାଇବେ । ପୁଣି ସେମାନେ ବଢ଼ାଇଲେ ଆମେ ବି ବଢ଼ାଇବା । ଏହିପରି ଭାବରେ ଶକ୍ତିର ଭାର-ସାମ୍ୟ ରଖିବାକୁ ଆମେ ଉଭୟେ ଚେଷ୍ଟା କରିବା ତ ସୈନ୍ୟବାହିନୀ ଉପରେ ଦୁଇଦେଶର ଖର୍ଚ୍ଚ ବଢ଼ି ଚାଲିବ ସିନା କମିବ ନାହିଁ । ଯଦି କେବେ କାହାର ମୁଣ୍ଡ ବିଗିଡ଼ି ତେବେ ଯୁଦ୍ଧ ହୋଇଯିବ । ଏଣୁ ଆକ୍ରମଣକୁ ପ୍ରତିରୋଧ କରିଦେଲେ ଖାଲି ପ୍ରତିରକ୍ଷା ହୋଇଯିବ ନାହିଁ ।

## ଚୀନର ଅସଲ ପ୍ରତିରୋଧ ଦେଶ ନିର୍ମାଣରେ ନିହିତ—

ଧରନ୍ତୁ କେହି ଆପଣଙ୍କ ମୁଣ୍ଡ ଉପରେ ପାହାର ଚଢ଼ାଇବାକୁ ଠେଙ୍ଗା ଉଞ୍ଚାଇଛନ୍ତି । ଆପଣ ତାକୁ ହାତ ଉଠାଇ ଅଟକାଇ ଦେବାରେ ହିଁ ସେ ସମସ୍ୟାର ସମାଧାନ କରିପାରିଲେ । ଏଣୁ ସୀମାନ୍ତରେ ସେନାବାହିନୀ ରଖି ଚୀନକୁ ଅଟକାଇ ଦେବାରେ ଆମେ ଆମର କର୍ତ୍ତବ୍ୟ ସମ୍ପାଦନ କଲେ । କେହି ଏଥିପାଇଁ ଆମକୁ ଦୋଷ ଦେଇ ପାରିବ ନାହିଁ । ମୁଁ ହିଂସାରେ ବିଶ୍ୱାସ କରେ ନା ଏବଂ ଏ କଥା ମଧ୍ୟ ଜାଣେ ଯେ, ହିଂସାଦ୍ୱାରା କୌଣସି ସମସ୍ୟାର ସମାଧାନ ହେବନାହିଁ । ଏଣୁ ଆଜିର ସଂଘର୍ଷକୁ ତୁଟାଇବାକୁ ହେଲେ ଆମକୁ ଆମ ଅନୁଯାୟୀ ଦେଶ ଗଢ଼ିବାକୁ ହେବ ।

ଯେତେବେଳେ ଚୀନ୍‌ବାଲା ଆକ୍ରମଣ କରିବାକୁ ଆସିବେ, ସେମାନେ ଆମକୁ ଦେଖି ମନେକରିବେ ଯେ, 'କେତେ ସୁନ୍ଦର ଭାବରେ ଏମାନେ ନିଜ ଦେଶକୁ ଚଳାଉଛନ୍ତି । କିନ୍ତୁ ଆମେ ଆମ ଦେଶକୁ ଗଢ଼ିବାକୁ ଯାଇ କେତେ ଜୋର ଜବରଦସ୍ତି ଏବଂ ଅସନ୍ତୋଷ ସୃଷ୍ଟି କରିଛୁ ।' ସୁତରାଂ, ସେମାନେ ଏଠୁ ଅଧ୍ୟୟନ କରି ଯିବେ । ସେମାନେ ଆଉ ଶତ୍ରୁ ଭାବରେ ଆସିବେ ନାହିଁ । ବନ୍ଧୁ ଭାବରେ ଆମର ସମାଜ ବ୍ୟବସ୍ଥାରୁ ଶିକ୍ଷା ଲାଭ କରିବା ପାଇଁ ବିଦ୍ୟାର୍ଥୀର ମନ ନେଇ ଆସିବେ ।

ଯଦି ମୋତେ ପଚରା ଯାଏ ଯେ, ଏ କଥା କାହାଦ୍ୱାରା ସମ୍ଭବ ହେବ ? ତାହାହେଲେ ମୁଁ ଜବାବ ଦେବି ଯେ ଏ କଥା ଆପଣମାନେ କରିବେ,—ଯେଉଁମାନେ କି ମୋ ଆଗରେ ବସିଛନ୍ତି ।

( ତା ୨୮-୯-୬୩ରେ ତାଳଚେରଠାରେ ଢେଙ୍କାନାଳ ଜିଲାର ପଞ୍ଚାୟତ କର୍ମକର୍ତ୍ତାମାନଙ୍କ ସଭାରେ ପ୍ରଦତ୍ତ ଭାଷଣ )

---

## ସର୍ବୋଦୟ ନୀତିଦ୍ୱାରା ପ୍ରକୃତ ଗଣତନ୍ତ୍ର ସମାଜର ପ୍ରତିଷ୍ଠା ହେବ

### ପଞ୍ଚାୟତ ସର୍ବୋଦୟ ବିଚାରକୁ ଗ୍ରହଣ କରୁ—

ଆଜି ଏଠି ପଞ୍ଚାୟତର ମୁଖ୍ୟଲୋକମାନଙ୍କୁ ଏଇଥିପାଇଁ ଏକାଠି କରାଯାଇଛି ଯେ ସର୍ବୋଦୟ ବିଚାରକୁ ଆମେ ଯେଉଁ ଭାବରେ ଭାବୁଛୁ, ତାହା ସେମାନଙ୍କ ଆଗରେ ରଖି ପାରିବୁ। ସର୍ବୋଦୟ ବିଚାରକୁ ସାମୂହିକ ଭାବେ ଏହା କାର୍ଯ୍ୟକାରୀ କରାଯାଇବ ତ ତାହା ହେଉଛି ଗ୍ରାମପଞ୍ଚାୟତ। ବ୍ୟକ୍ତିଗତ ଭାବରେ କେହି ନିଜ ଜୀବନରେ ଏହାକୁ କାମରେ ଲଗାଇବାକୁ ଗଲେ ତାକୁ କେହି ବାଧା ଦେବନାହିଁ। ଯଦି ପରିସ୍ଥିତି ଅନୁକୂଳ ଥାଏ ତେବେ ତାକୁ ଏଥିପାଇଁ ସୁବିଧା ହେବ, ଏବଂ ପ୍ରତିକୂଳ ଥିଲେ କଠିନ ହେବ। ହଁ, ଯଦି କୌଣସି ଲୋକର ଏ ବିଚାରପ୍ରତି ଶ୍ରଦ୍ଧା ରହିଥିବ, ତେବେ ପରିସ୍ଥିତି ପ୍ରତିକୂଳ ହେଉ ବା ଅନୁକୂଳ ହେଉ ସେ ଏହା ନିଶ୍ଚୟ କରିବ। କିନ୍ତୁ ବର୍ତ୍ତମାନର ଆଲୋଚନାରେ ଆମେ ବ୍ୟକ୍ତିଗତ ପ୍ରଶ୍ନକୁ ଛାଡ଼ିଦେବା। ତାହା ବୋଲି ମୁଁ ବ୍ୟକ୍ତିଗତ ଉଦ୍ୟମର ମହତ୍ତ୍ୱକୁ ଅଳ୍ପ ବୋଲି କହୁନାହିଁ। ବରଂ ବେଶୀ ବୋଲି କହୁଛି, ମାତ୍ର ଯେଉଁ ଉଦ୍ଦେଶ୍ୟରେ ଏ ସଭା ଆହୂତ ହୋଇଛି ଆମେ ସେ ଉଦ୍ଦେଶ୍ୟକୁ ପ୍ରଥମ ସ୍ଥାନ ଦେବୁ।

ମୋର ଏହି କଥାରେ ଶ୍ରଦ୍ଧା ରହିଛି ଯେ ଗ୍ରାମପଞ୍ଚାୟତମାନେ ସର୍ବୋଦୟ ବିଚାରକୁ ସହଜରେ ଗ୍ରହଣ କରି ନଅନ୍ତୁ। ଏଣୁ ମୁଁ

ଭାବିଲି ଯେ ପଞ୍ଚାୟତର ଲୋକମାନଙ୍କୁ ଡାକିବା ଏବଂ ସେମାନଙ୍କ ଆଗରେ ଆମେ ଆମର କଥା ରଖିବା । ଏଣୁ ଆପଣମାନେ ଯେଉଁସବୁ ପ୍ରଶ୍ନ ମୋତେ ପଚାରୁଛନ୍ତି, ଗୋଟି ଗୋଟି କରି ମୁଁ ତାର ଜବାବ ଦେବି ।

## ଭୂଦାନ ଭିକ୍ଷା ନୁହେଁ, ଏହା ଏକ ଦୀକ୍ଷା—

ଆପଣମାନେ ପଚାରୁଛନ୍ତି ଯେ ଗରିବ ଲୋକପାଇଁ ଆପଣ ଜମି ଭିକ୍ଷାକରି ବୁଲୁଛନ୍ତି । ତାହା ଅପେକ୍ଷା ସରକାରଙ୍କୁ କହିଲେ, ସେ ଭୂମିହୀନ ଗରିବଲୋକଙ୍କୁ ଅନାବାଦୀ ଜମି ଦେଇ ପାରନ୍ତେ ନାହିଁ ?

ଏ ପ୍ରଶ୍ନରେ ଗୋଟାଏ ବଡ଼ ଭ୍ରମ ରହିଛି । ତାହା ହେଉଛି ଯେ ଭୂଦାନ ଦ୍ୱାରା ଗରିବଙ୍କ ପାଇଁ ଜମି ମାଗିବା କଦାପି ଭିକ୍ଷା ନୁହେଁ । ନୂତନ ବିଚାରର ଏହା ଏକ ଦୀକ୍ଷା ଦେଇ ବୁଲୁଛୁ । ଯେପରି ପାଣି, ପବନରେ କେହି ମାଲିକ ନାହିଁ ଓ ପାଣି ପବନର ମାଲିକ ଯେପରି କେହି ନୁହେଁ, ସେହିପରି ଜମି ଉପରେ ମାଲିକାନା ଏକ ଅତି ବଡ଼ ଅନ୍ୟାୟ । ପାଣି ପବନ ଯେପରି ସବୁରି ପାଇଁ ସେହିପରି ଜମି ମଧ୍ୟ ସମସ୍ତଙ୍କର । ନିଜଭାଷାରେ ଏହି ବିଚାର ବୁଝାଇବାକୁ ଯାଇ ଆମେ ଲୋକଙ୍କୁ ଏକ ନୂତନ ଦୀକ୍ଷା ଦେଉଛୁ । ଗାଁରେ ଗାଁରେ ଲୋକଙ୍କୁ ଜମି ମାଗୁଛୁ । ସେମାନେ ନିଜର କର୍ତ୍ତବ୍ୟଜ୍ଞାନରେ ଭୂମିହୀନମାନଙ୍କ ପାଇଁ ଜମି ଦେଉଛନ୍ତି ମଧ୍ୟ । ମନେ କରନ୍ତୁ କୌଣସି ଆଶ୍ରମ ପ୍ରତିଷ୍ଠା କରିବା ପାଇଁ ଆମେ ଆପଣଙ୍କୁ ଜମି ମାଗିଲୁ । ଯଦି ଆପଣ ଜମି ଦେଲେ ଆମେ ନିଶ୍ଚୟ ଆପଣଙ୍କର ଉପକାର ମାନିବୁ । ଆଶ୍ରମ, ସ୍କୁଲ, ମନ୍ଦିର, ଓ ମସଜିଦ୍ ଇତ୍ୟାଦି ପାଇଁ ଲୋକେ ଜମି ଦେଇଥାନ୍ତି ଓ ତାହା

ହେଉଛି ଧାର୍ମିକ ଭିକ୍ଷା; କିନ୍ତୁ ଏ ଆନ୍ଦୋଳନ ସେଭଳି କାର୍ଯ୍ୟ ପାଇଁ ନୁହେଁ ।

ଭୂଦାନ ଆନ୍ଦୋଳନ ପ୍ରେମ ସମ୍ବନ୍ଧ ସୃଷ୍ଟି କରବ—

ଆଜ ଏକ କଥା ହେଉଛି ଯେ, ଯେ କୌଣସି ଉପାୟରେ ଗରିବ ଲୋକଙ୍କୁ ଜମି ଦେଲେ ଚଳିବ ନାହିଁ । ଯେଉଁମାନଙ୍କ ପାଖରେ ଜମି ରହିଛି, ସେମାନେ ନିଜ ହାତରୁ ଭୂମିହୀନମାନଙ୍କ ପାଇଁ ଜମି ଦେବେ । ତା' ନହେଲେ ହୃଦୟ ସହିତ ହୃଦୟର ମିଶ୍ରଣ ହେବ ନାହିଁ । ଏହି ଆନ୍ଦୋଳନ ଖାଲି ଭୂମି ମାଗିବା ଆନ୍ଦୋଳନ ନୁହେଁ, ହୃଦୟ ସହିତ ହୃଦୟକୁ ମିଶାଇ ଥିବାର ଏକ ଆନ୍ଦୋଳନ ।

ସରକାରଠାରୁ ଯଦି କେହି ଜମି ଆଣି ବାଣ୍ଟିବାକୁ ବସୁଛନ୍ତି ଥାଆନ୍ତି ତେବେ ଆମେ ତାଙ୍କୁ ବାଧା ଦେଉନାହୁଁ । କିନ୍ତୁ ସେପରି ଭାବରେ ହୃଦୟ ସହିତ ହୃଦୟ ମିଶିବ ନାହିଁ । ବ୍ୟକ୍ତି ବ୍ୟକ୍ତିର ହୃଦୟ ଯୋଡ଼ିବା ପାଇଁ ମାଲିକ ଓ ମୂଲିଆ ଭିତରେ ପ୍ରେମ ସମ୍ବନ୍ଧ ପ୍ରତିଷ୍ଠା କରିବା ପାଇଁ, ସମୁଦାୟ ଗାଁ ଗୋଟାଏ ପରିବାର ହେଉ ଓ ପ୍ରତ୍ୟେକଟି ଗାଁ ଗୋଟିଏ ଗଡ଼ଜାତ ହେଉ--ଏଥିପାଇଁ ଏ ଆନ୍ଦୋଳନ ଚାଲିଛି । ରାଜାମାନେ ତ ଗଲେଣି । ଏ ଯେଉଁ ଗଡ଼ ହେବ ତାହା ରାଜାଙ୍କର ଗଡ଼ ହେବନାହିଁ । ଲୋକଙ୍କର ଗଡ଼ ହେବ ।

ସରକାରଙ୍କ ପାଖରେ ଯଦି କିଛି ଅନାବାଦୀ ଜମି ଅଛି, ତାହାହେଲେ ତାକୁ ସରକାର ନିଶ୍ଚିତ ଭାବରେ ଲୋକଙ୍କୁ ବାଣ୍ଟିଦେବା ଉଚିତ ମଧ୍ୟ କିନ୍ତୁ ଦେଶରେ ମୋଟ ଯେତେ ଜମି ଲୋଡ଼ା, ତା' ଅନୁପାତରେ ଏତିକ ଯଥେଷ୍ଟ ହେବ ନାହିଁ ।

ସରକାର ଏବେ ଜମି ରଖିବାର ସର୍ବୋଚ୍ଚ ସୀମା ନିର୍ଦ୍ଧାରଣ କରିଛନ୍ତି । ଏଥିରୁ ବେଶୀ ଜମି ମିଳି ପାରିବାର ଆଶା ଦେଖାଯାଉ ନାହିଁ । ପୁଣି ଏହାଦ୍ୱାରା ହୃଦୟ ସହିତ ହୃଦୟ ଯୋଡ଼ ହେବ ନାହିଁ କି

ଇନଚାର ବିପ୍ଳବ ମଧ୍ୟ ସମ୍ଭବ ହେବ ନାହିଁ । ଭୂଦାନ-ଗ୍ରାମଦାନ ଆନ୍ଦୋଳନ ହେଲା ଇନ ବିପ୍ଳବର ଆନ୍ଦୋଳନ । ଲୋକଙ୍କର ହୃଦୟକୁ ପରସ୍ପର ସହିତ ଯୋଡ଼ ପ୍ରତ୍ୟେକଟି ଗାଁରେ ଗ୍ରାମସ୍ୱରାଜ୍ୟର ସ୍ଥାପନା କରିବା ହେଉଛି, ଏହାର ଉଦ୍ଦେଶ୍ୟ ।

ସରକାରଙ୍କ କଣ ଆମ କଥା ଶୁଭୁନାହିଁ ?—

ବାରବର୍ଷ ହେଲା ମୁଁ ବୁଲୁଛି । କୋଟି କୋଟି ଲୋକ ଆମ କଥା ଶୁଣି ସାରିଲେଣି । ଯୁଥା ଭିତରେ ସରକାରଙ୍କୁ କହିବା (approach) କ'ଣ ବାକି ଅଛି ? ମୁଁ ସିନା ଭଲ ଶୁଣି ପାରୁ ନାହିଁ । କାଲ ହୋଇଯାଉଛି ବୋଲି; କିନ୍ତୁ ମୋ ପରି କ'ଣ ସରକାର ମଧ୍ୟ କାଲ ହୋଇଯାଇଛି ? ଏଣୁ ବୁଦ୍ଧି ରଖିବା ଉଚିତ ଯେ ସରକାରଙ୍କୁ କହିବାରେ କିଛି ବାକି ରଖିନାହୁଁ । ଯେ କୌଣସି ପାର୍ଲାମେଣ୍ଟରେ ଆବାଜ ଉଠାଇଥିଲେ ଯାହା ହୋଇଥାନ୍ତା, ଲୋକଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ସରକାରଠାରେ ଯେତେ ଆପତ୍ତି ଅଭି-ଯୋଗ କରିବାର (Deputation) ଫଳ ଯାହା ହୋଇଥାନ୍ତା, ତାହାଠାରୁ ସହସ୍ର ଗୁଣ ବେଶୀ କାମ ଏ ଆନ୍ଦୋଳନ ଦ୍ୱାରା ହୋଇଛି । ଅନାବାଦୀ ଜମି ଗରିବ ଲୋକଙ୍କୁ ଦେବାପାଇଁ ସରକାର ବିଚାର କରୁଛନ୍ତି । ଯଦି ଆଇନ ନ କରି ଜମି ଦେବେ ତାହାହେଲେ ସେ ଦିଅନ୍ତୁ । ଆମର ଆପତ୍ତି ନାହିଁ । କିନ୍ତୁ କାହାକୁ ସେ ଜମି ମିଳିବ— ଗରିବ ଭୂମିହୀନଙ୍କୁ ତ ?

ଆଚ୍ଛା, ପଡ଼ିଆ ଭୂଇଁ ଯଦି ଗରିବ ଭୂମିହୀନ ଲୋକଙ୍କୁ ଆଣି ଦିଆଯାଏ, ତାହାହେଲେ ସେ ଚାଷ କରିବ କିପରି ? ଏଣୁ ତାକୁ ଉଠିଆ କରିବା ପାଇଁ ମଧ୍ୟ ସରକାର ସହାଯ୍ୟ କରିବା ଦରକାର । ପୁଣି ସରକାର ଭାବୁଛନ୍ତି ଯେ—ପଡ଼ିଆ ଜମି ନିଲାମରେ ଦେବା ଆବଶ୍ୟକ । କାରଣ ଏହାଦ୍ୱାରା ସରକାର ହାତକୁ ପଇସା ଆସିବ ।

ହଁ, ଏଇତ ସ୍ୱାଭାବିକ କଥା । କାରଣ କୌଣସି ଗରିବ ଯୁବକକୁ ଖୋଜି ତ କେହି ଝିଅ ଦିଏ ନାହିଁ ? ଯେହେତୁ ଗରିବ ଯୁବକକୁ କନ୍ୟା ଦାନ କଲେ ଝିଅ ସହିତ ସାହାକରି ଯୌତୁକ ଦେବାର କଥା, ଦେବାକୁ ପଡ଼ିବ । ଉପରନ୍ତୁ ତା'ର ସଂସାର ଚଳାଇବା ଲାଗି ପୁଣି ନିୟମିତ ସାହାଯ୍ୟ ଦେବାକୁ ହେବ । ଏଣୁ ସାଧାରଣତଃ ଲୋକେ ଗରିବ ଯୁବକଟିଏ ଖୋଜି ଖୋଜି କେବେ ହେଲେ ତା' ହାତରେ କନ୍ୟା ଦାନ କରନ୍ତି ନାହିଁ । ସୁତରାଂ ସରକାର ବା ସେ ବୁଦ୍ଧି ଧରନ୍ତେ କାହିଁକି ? ଯେଉଁ ଲୋକଠାରୁ ପଇସା ମିଳିବ, କେବଳ ସେହି ଲୋକକୁ ସେ ନିଲାମରେ ଭୂମି ଦେବ । ଫଳରେ ପଇସା ମିଳିବ, ପୁଣି ତା'ସାଙ୍ଗକୁ ଦେଶର କାମ ମଧ୍ୟ ହୋଇଯିବ । ଆଜି ସବୁ ଦିଗରୁ ସରକାରକୁ ଟିକସ ବସାଇବାକୁ ପଡ଼ୁଛି । ତେଣୁ ଯଦି କିଛି ପଇସା ମିଳିଯାଏ, ତେବେ ଆଉ ତାଙ୍କୁ ବ୍ୟୟସଂକୋଚ କରିବାକୁ ପଡ଼ିବ ନାହିଁ । ଉତ୍ପାଦନ ବଢ଼ିବ । ପୁଣି ଆଜି ଯେଉଁ ଜରୁରୀକାଳୀନ ସ୍ଥିତି ରହିଛି, ସେଥିରେ ଉପକାର ମିଳିବ ।

ମୁଁ ଏ କଥା କହୁନାହିଁ ଯେ ସରକାରର ଏ ସବୁ କାମ କରିବା ଅନୁଚିତ । ମାତ୍ର ମୁଁ କହେଁ ଯେ ଏ ଭୂମି ଗରିବ ଲୋକ-ମାନଙ୍କୁ ଦିଆଯାଉ । ଗରିବମାନଙ୍କର ସହଯୋଗସମିତି କରି ସେମାନଙ୍କ ହାତକୁ ଦେଲେ ବି ଲାଭ ହେବ । ଏଇଥିପାଇଁ ଯେଉଁ ଢଙ୍ଗରେ ସରକାର ଚିନ୍ତା କରୁଛନ୍ତି, ତା'ର ନମୁନା ମୁଁ ଆପଣ-ମାନଙ୍କ ଆଗରେ ରଖିଲି । ସୁତରାଂ, ଆପଣମାନଙ୍କ ଭିତରୁ ଯାହାଙ୍କ ପାଖରେ ଜମି ଅଛି, ସେମାନେ ଅନ୍ୟମାନଙ୍କ ପାଇଁ କିଛି ଦିଅନ୍ତୁ । ସରକାର ନିଲାମଦ୍ୱାରା ଜମି ବାଣ୍ଟିଲେ ତାହା ଆଉ ଭୂଦାନ କାମ ହେବନାହିଁ । କାରଣ ଏ ଯେଉଁ ଗ୍ରାମସ୍ୱରାଜ୍ୟର କାମ ଚାଲିଛି, ଏହା ହେଉଛି ହୃଦୟ ସହିତ ହୃଦୟକୁ ଯୋଡ଼ିବାର କାମ । ଏଇଥି ପାଇଁ ମୁଁ ଗତ ବାରବର୍ଷ ହେଲା ବୁଲୁଛି ।

ମୋତେ ପୁଣି ପ୍ରଶ୍ନ କରାଯାଉଛି ଯେ ଆଜିର ଗ୍ରାମ-ପଞ୍ଚାୟତ ସର୍ବୋଦୟ ସମାଜ ସ୍ଥାପନା ପାଇଁ କେତେଦୂର ସହାୟକ ହେବ ?

## ରାଜତନ୍ତ୍ର ଯେତେ ଭଲ ହେଲେ ବି
## ତାହାଠାରୁ ପ୍ରଜାତନ୍ତ୍ର ଉତ୍କୃଷ୍ଟ—

ଆପଣମାନେ ଜାଣି ରଖନ୍ତୁ ଯେ—ପଞ୍ଚାୟତଠାରୁ ଖୁବ୍ ବଡ଼ ଆଶା ମୁଁ ରଖିଛି । କ୍ଷମତାର ବିକେନ୍ଦ୍ରୀକରଣ ଦିଗରେ ଏହା ହେଉଛି ଏକ ବିଶିଷ୍ଟ କ୍ଷେତ୍ର । ଗ୍ରାମପଞ୍ଚାୟତର ବିଚାର ହେଉଛି ଏକ ଉତ୍ତମ ବିଚାର । ଠିକ୍ ଢଙ୍ଗରେ ଚଳାଇ ପାରିଲେ ଏଥିରୁ ଖୁବ୍ ଭଲ ଫଳ ମିଳିବ, ସେଥିପାଇଁ ଆଜିର ପଞ୍ଚାୟତ ଯେପରି ଚାଲିଛି, ସେଥିରେ ଆମକୁ କେତେକ ସଂଶୋଧନ ଓ ପରିବର୍ତ୍ତନ କରିବାକୁ ପଡ଼ିବ ।

ଆମେ, ଆମ ଦେଶର ରାଜା ମହାରାଜାମାନଙ୍କୁ ହଟାଇଲେ । କ'ଣ ସେମାନେ ସମସ୍ତେ ଖରାପ ଥିଲେ ? ମୋର ମନେ ପଡ଼ୁଛି ଯେ ପିଲାଦିନେ ମୁଁ ବରୋଦା ରାଜ୍ୟରେ ଥିଲି । ସାରା ଦେଶଭିତରେ ତାହା ଅନ୍ୟତମ ପ୍ରଗତିଶୀଳ ରାଜ୍ୟ ଥିଲା । ଭାରତବର୍ଷରେ ଯେତେବେଳେ ଇଂରେଜମାନଙ୍କର ରାଜତ୍ୱ ଥିଲେ ସୁଦ୍ଧା ଅନ୍ୟସବୁ ପ୍ରଦେଶମାନଙ୍କର ପ୍ରଗତିଠାରୁ ବରୋଦାର ପ୍ରଗତି ହୋଇଥିଲା ସବୁଠାରୁ ବେଶୀ । ଖୁବ୍ ସହଜ ଭାବରେ ସେଠାରେ ରାଜ୍ୟ କାରବାର ଚାଲିଥିଲା । ଦୁନିଆର ଉତ୍ତମ ବ୍ୟକ୍ତିମାନଙ୍କୁ ଆଣି ସେଠାରେ ଗାଇକୋବାଡ଼ ନିଜ ରାଜ୍ୟରେ ରଖାଉ ଥିଲେ ବା କାମ ଦେଉଥିଲେ । ବରୋଦା ଏତେ ଉନ୍ନତ ଥିଲା ଯେ, ବଙ୍ଗ ପ୍ରଭୃତିର ବିଶିଷ୍ଟ ବିପ୍ଳବୀ ଓ ଆନ୍ଦୋଳନକାରୀମାନେ ଯାଇ ବରୋଦା ରାଜ୍ୟରେ ଆଶ୍ରୟ ନେଉଥିଲେ । ପିଲାଦିନେ ଏହିଭଳି ବ୍ୟକ୍ତିମାନଙ୍କ ସହିତ ମୋର ସମ୍ପର୍କ ମଧ୍ୟ ହୋଇଥିଲା । ଇଂରେଜ ସରକାର

ହୁଡୁଁ ଥିଲେ ଯେ, ଆନ୍ଦୋଳନକାରୀ ବ୍ୟକ୍ତିମାନଙ୍କୁ ବରୋଦାର ରାଜା ନିଜ ରାଜ୍ୟରୁ ବାହାର କରି ଦିଅନ୍ତୁ । ମାତ୍ର ରାଜା ସାହାଜୀ-ରାଓ କହୁଥିଲେ ଯେ, 'ମୋ ରାଜ୍ୟ ଭିତରେ ଇଂରେଜମାନଙ୍କର କ୍ଷମତା ଖାଟିବ ନାହିଁ ।' ସେଠାରେ ଶିକ୍ଷା ପ୍ରଭୃତିର ଉନ୍ନତି ଖୁବ୍ ହୋଇଥିଲା । ଏଣୁ ରାଷ୍ଟ୍ରର ଗଠନକର୍ତ୍ତାମାନଙ୍କ ଭିତରେ ବରୋଦାର ରାଜାଙ୍କ ଦାନକୁ ନିଶ୍ଚୟ ସ୍ୱୀକାର କରାଯିବ । କିନ୍ତୁ ମୁଖ୍ୟକଥା ହେଉଛି ଯେ ସବୁଠାରୁ ଉତ୍ତମ ରାଜାଙ୍କର ରାଜ୍ୟରେ ମୂଧା ପ୍ରଜାମାନଙ୍କର ବୁଦ୍ଧିର ବିକାଶ ହୋଇ ନ ଥାଏ । ଯେତେବେଳେ ରାଜା ଭଲରେ ଥାଆନ୍ତି, ସେତେବେଳେ ପ୍ରଜାଙ୍କ ଦଶା ଭଲ, ପୁଣି ରାଜା ଖରାପ ହେଲେ ପ୍ରଜାଙ୍କ ଦଶା ଖରାପ । ଯେମିତି ମେଣ୍ଢା ଜଗାଳି ଭଲଲୋକ ହେଲେ ମେଣ୍ଢାମାନଙ୍କର ଅବସ୍ଥା ଭଲ ଥାଏ ଆଉ ଦୁଷ୍ଟଲୋକ ହେଲେ, ମେଣ୍ଢାମାନେ ମାଡ଼ ସହନ୍ତି । ରାଜୁତା ରାଜ୍ୟରେ ପ୍ରଜାମାନଙ୍କର ସ୍ଥିତି ସେହିପରି ହୋଇଥାଏ ।

କମ୍ୟୁନିଷ୍ଟମାନଙ୍କ ଶାସନ ବ୍ୟବସ୍ଥାରେ ମଧ୍ୟ ସାଧାରଣ ଜନତା ଏଭଳି ଅବସ୍ଥାରେ ଥାଏ । ସବୁବେଳେ ତାକୁ ସୁଖୀ ବଳଦ ବା ଭଲ ବଳଦ କରି ରଖିବାକୁ କମ୍ୟୁନିଷ୍ଟ ଶାସକମାନେ ଚେଷ୍ଟା କରନ୍ତି । କିନ୍ତୁ ପ୍ରଜାମାନଙ୍କ ହାତରେ କୌଣସି କ୍ଷମତା ଦିଅନ୍ତି ନାହିଁ । ସେମାନେ ବିଶ୍ୱାସ କରନ୍ତି ଯେ ଦିନ ଆସିବ, ଯେତେବେଳେ କି ରାଷ୍ଟ୍ର ରହିବ ନାହିଁ । ମାତ୍ର ତାହା କେବେ ଲୋପ ପାଇବ ? ତା'ର ଉତ୍ତରରେ ସେମାନେ କହନ୍ତି "ଯେତେବେଳେ ସାରା ଦୁନିଆରେ କମ୍ୟୁନିଜ୍ମ ବା ସାମ୍ୟବାଦ ପ୍ରସାର ଲାଭ କରିବ ।" କିନ୍ତୁ ସେତେବେଳେ ଯାଏ ଧୀରେ ଧୀରେ ରାଷ୍ଟ୍ର ଲୋପ ପାଉଥିବ କି ନାହିଁ ? ତା'ର ଉତ୍ତର ଦିଅନ୍ତି ସେମାନେ, ନାଁ, ସେ ସମୟାନ୍ତ ରାଷ୍ଟ୍ର ଖୁବ୍ ଶକ୍ତିଶାଳୀ ହେବ । ଏକଛତ୍ରବାଦ ରହିବ । ଏହିରୂପେ

ନଗଦେକରି ସେମାନେ ଲୋକଙ୍କ ହାତକୁ ଦେଇଥିବା ଗୋଟାଏ ଖୁବ୍ ଶକ୍ତିଶାଳୀ ବସ୍ତୁ ଏବଂ ଯେଉଁ ନାମଟି ବାକି ରହେ, ସେଇଟା ହେଲା ରାଷ୍ଟ୍ରକୁ ଧୀରେ ଧୀରେ ଲୋପ କରିବା କଥା । ଚୀନ୍ ଏବଂ ରୁଷିଆର ଘଟଣାରୁ ଏ କଥାର ଦର୍ଶନ ମିଳୁଛି । ଆଜି ଅବଶ୍ୟ ଚୀନ୍ ଏବଂ ରୁଷିଆ ବୁଝିଲେଣି ଯେ ଏ ପର୍ଯ୍ୟନ୍ତ ସେ ଦେଶରେ ଦାରିଦ୍ର୍ୟର ସମାଧାନ ହୋଇନାହିଁ । ଖାଦ୍ୟର ଅଭାବ ମଧ୍ୟ ଅଛି । ଏପରିକି ରୁଷିଆରେ ଯଥେଷ୍ଟ ପରିମାଣରେ ଜମି ଥିବା ସତ୍ତ୍ୱେ ସେଠାରେ ଖାଦ୍ୟ ନଅଣ୍ଟ ହେଉଛି ଓ ଏବେ ଆମେରିକାଠାରୁ ଗହମ ସାହାଯ୍ୟ ମଗାଉଛି । ଆମେରିକା ରୁଷିଅକୁ ଗହମ ଯୋଗାଇଛି ମଧ୍ୟ । ଏଥିରୁ ମନେ ହେଉଛି ଯେ, ଶସ୍ୟ ଉତ୍ପାଦନ ପାଇଁ ସେମାନେ ଯେଉଁ ପନ୍ଥା (System) ଅନୁସରଣ କଲେ, ତାହା ସେଠାରେ କୃତକାର୍ଯ୍ୟ ହୋଇପାରିଲା ନାହିଁ । ପ୍ରଜାମାନଙ୍କୁ ବଳଦ କରି ରଖିବାପାଇଁ ଚେଷ୍ଟା ଚାଲିଲା । କ୍ଷମତାତକ ରାଷ୍ଟ୍ର ହାତରେ ରହିଲା । ସାମ୍ୟବାଦୀମାନଙ୍କର ଶାସ୍ତ୍ର କହେ ଯେ ଶେଷରେ ଜନତାର ବ୍ୟକ୍ତିଗତ ଅହଂକାର ଲୋପ ପାଇବ । ଇଏତ ପୁରାପୁରି ବେଦାନ୍ତର କଥା । ବେଦାନ୍ତ ମଧ୍ୟ ସ୍ୱୀକାର କରେ ଯେ ମଣିଷକୁ ଅହଂକାର ମୁକ୍ତ ହେବାକୁ ହେବ । ସେଥିପାଇଁ ଆଜଠାରୁ ତାକୁ ଧୀରେ ଧୀରେ ତାହା ଛାଡ଼ିବାକୁ ପଡ଼ିବ । କିନ୍ତୁ ସାମ୍ୟବାଦ ଦର୍ଶନ କହେ ଯେ, ଯେ ପର୍ଯ୍ୟନ୍ତ ଅହଂକାର ନ ଛାଡ଼ୁଛି, ସେପର୍ଯ୍ୟନ୍ତ ଟାଣକରି ଅହଂକାରକୁ ଜାବୁଡ଼ି ରଖିବାକୁ ହେବ । ରାଷ୍ଟ୍ର ହାତରେ ଏତେ ପରିମାଣରେ କ୍ଷମତା ଦେବାକୁ ପଡ଼ିବ, ଯେତେ କି 'ପୂର୍ବକାଳରେ ରାଜାମାନଙ୍କ ହାତରେ ସୁଦ୍ଧା ନ ଥିଲା ।

## ରାଜତନ୍ତ୍ର, ପ୍ରଜାତନ୍ତ୍ର ଓ କମ୍ୟୁନିଷ୍ଟ ଶାସନର ଫରକ କଣ ?—

ରାଜା ଏବଂ କମ୍ୟୁନିଷ୍ଟ ମାନଙ୍କ ଶାସନରେ ପାର୍ଥକ୍ୟ ହେଉଛି ଯେ ରାଜା ହେଉଛି ଜଣେ ବ୍ୟକ୍ତି । ମାତ୍ର କମ୍ୟୁନିଷ୍ଟ ହେଉଛନ୍ତି ଏକ ଗୋଷ୍ଠୀ । ସେମାନଙ୍କ ଆଜ୍ଞାରେ ସମସ୍ତ ରାଜ୍ୟର କାରବାର ଚାଲିଥାଏ । ଅନ୍ୟମାନେ ସେମାନଙ୍କ କଥାକୁ ଆପେ ଆପେ ମାନି ନିଅନ୍ତି । ଅତଏବ ରାଜତନ୍ତ୍ର ଏବଂ କମ୍ୟୁନିଷ୍ଟ ଶାସନ—ଏ ଦୁଇଟିଯାକ ଶାସନ ବ୍ୟବସ୍ଥାର ସ୍ୱରୂପ ଏକାଭଳି । ମାତ୍ର ପାର୍ଥକ୍ୟ ହେଉଛି ଏତିକି ଯେ, ରାଜାମାନେ ଭାବନ୍ତି, ତାଙ୍କ ହାତରେ ରାଜବଂଶର ଅଖଣ୍ଡ କ୍ଷମତା ପରମ୍ପରା କ୍ରମେ ରହିବ । ମାତ୍ର କମ୍ୟୁନିଷ୍ଟମାନେ ମାନନ୍ତି ଯେ ସବୁବେଳେ ଜଣକ ହାତରେ ସରକାର ରହିବ ନାହିଁ । ମାତ୍ର ମୁଁ କହୁଛି ଯେ, ଏ ଉଭୟ ବ୍ୟବସ୍ଥାରେ ଜନତାର କୌଣସି ଅଭିକ୍ରମ (initiative) ନ ଥାଏ ।

ଏବେ ଆମ ଦେଶରେ ଗଣତନ୍ତ୍ର ଚାଲିଛି । ରାଜାମାନେ ଗଲେଣି । ସେମାନଙ୍କ ବଦଳରେ ଲୋକ ପ୍ରତିନିଧିମାନଙ୍କୁ ବାଛି ତାଙ୍କ ହାତରେ ଆମେ କ୍ଷମତା ଦେଇଛୁ । ପ୍ରଦେଶର ମୁଖ୍ୟ ମନ୍ତ୍ରୀ ବା ରାଷ୍ଟ୍ରର ପ୍ରଧାନ ମନ୍ତ୍ରୀ ଯେ ହେଉଛନ୍ତି, ସେ ନିଜର ମନ୍ତ୍ରୀମଣ୍ଡଳ ତିଆରୁଛନ୍ତି । ସେଥିରେ ଆଉ ଗଣତନ୍ତ୍ରର ପ୍ରଶ୍ନ ନାହିଁ । ମୁଖ୍ୟମନ୍ତ୍ରୀ ବା ପ୍ରଧାନମନ୍ତ୍ରୀ ତାଙ୍କ ଇଚ୍ଛା ଅନୁସାରେ ନିଜ ମନ୍ତ୍ରୀମଣ୍ଡଳ ପାଇଁ ଲୋକ ବାଛିବେ । ଏଣୁ ଜନତା ହାତକୁ ରାଷ୍ଟ୍ର ଆସିଥିବା ଭଳି ଅନୁଭବ ମିଳୁ ନାହିଁ । ଉପରନ୍ତୁ ଦେଖାଯାଉଛି ଯେ, ଯଦି ମୁଖ୍ୟମନ୍ତ୍ରୀ ଭଲ ପଡ଼ୁଛନ୍ତି ତାହାହେଲେ ରାଜ୍ୟ ବ୍ୟବସ୍ଥା ଭଲ ଚାଲୁଛି । ଯଦି ସେ କମ୍ ବୁଦ୍ଧିମାନ ଯୁଟୁଛନ୍ତି, ତେବେ ରାଜ୍ୟ ବ୍ୟବସ୍ଥା ମଧ୍ୟ ସେହିପରି ଚାଲୁଛି ।

ଉଦାହରଣ ସ୍ୱରୂପ ବିହାର ଓ ମହାରାଷ୍ଟ୍ର କଥା ଆପଣମାନେ ନିଅନ୍ତୁ । ମହାରାଷ୍ଟ୍ରରେ ନିଶାନିବାରଣ କରାଯାଇଛି । କିନ୍ତୁ ବିହାରରେ ନିଶା ପ୍ରଚଳନ ବନ୍ଦ ହୋଇନାହିଁ । ତାହାହେଲେ କ'ଣ ଏ ଦୁଇଟି ପ୍ରଦେଶର ଲୋକମତ ଭିତରେ ପାର୍ଥକ୍ୟ ଏତେ ବେଶୀ ! ନାଁ ଲୋକମତର ପ୍ରଭାବ ଏଥିରେ ନାହିଁ । ମହାରାଷ୍ଟ୍ରର ମୁଖ୍ୟମନ୍ତ୍ରୀଙ୍କ ବୁଦ୍ଧି ଯାହା, ବିହାରର ମୁଖ୍ୟମନ୍ତ୍ରୀଙ୍କ ବୁଦ୍ଧି ତାହାଠାରୁ ଅଲଗା । ପୁଣି ବିହାରରେ ଗୋ-ବଧ ନିଷେଧ କରାଯାଇଛି ଅଥଚ ଏକଥା ମହାରାଷ୍ଟ୍ରରେ ହୋଇନାହିଁ । ତାହାହେଲେ କ'ଣ କୁହାଯିବ ଯେ ମହାରାଷ୍ଟ୍ରର ଲୋକେ ଗୋ-ବଧ ବନ୍ଦ ହେବା ଚାହାନ୍ତି ନାହିଁ ? ଏପରି ନୁହେଁ । ଦୁଇଟିଯାକ ପ୍ରଦେଶର ମୁଖ୍ୟମାନଙ୍କ ବୁଦ୍ଧି ଯେପରି କାମ କରୁଛି, ପରିଣତି ସେହିପରି ହେଉଛି ।

ଆଉ ଗୋଟିଏ ଉଦାହରଣ ନିଅନ୍ତୁ । ଏହା ଭଲ କି ଖରାପ ସେ କଥା ଛାଡ଼ି ଦିଅନ୍ତୁ । ମାତ୍ର ଘଟଣା ଟା ହେଉଛି, ଯେଉଁ ବେଳେ ଶ୍ରୀ କାଟଜୁ ମୁଖ୍ୟମନ୍ତ୍ରୀ ଥିଲେ, ମଧ୍ୟ ପ୍ରଦେଶରେ ସେତେବେଳେ ସଂସ୍କୃତ ଭାଷା ବାଧ୍ୟତା ମୂଳକଭାବେ ମାଧ୍ୟମିକ ସ୍କୁଲରେ ପଢ଼ା ଯାଉଥିଲା । ମାତ୍ର ଏବେ ଆଉ ସେ କଥା ନାହିଁ । ଯେତେବେଳେ ସେଠାରେ ଗୁପ୍ତ ସାମ୍ରାଜ୍ୟ ଚାଲୁଥିଲା, ସେତେବେଳେ ଗୁପ୍ତ ସମ୍ରାଟଙ୍କ ଶାସନ ବ୍ୟବସ୍ଥା ଗୋଟାଏ ଭଳି ଥିଲା, ପୁଣି ତାଙ୍କପରେ ଯେଉଁମାନେ ଆସିଲେ ସେମାନଙ୍କ ବ୍ୟବସ୍ଥା ତାହାଠାରୁ ଭିନ୍ନ-ହେଲା । ଏ କଥାଟା ଠିକ୍ ସେହିପରି ।

ଗଣତନ୍ତ୍ରର ପାଞ୍ଚବର୍ଷ ପରେ ରାଷ୍ଟ୍ରର ବ୍ୟବସ୍ଥାକୁ ପରିବର୍ତ୍ତନ କରିଦେବୁ ବୋଲି ମନେକରିବା ଏକ ଭୁଲ କଥା । ପାଞ୍ଚବର୍ଷ ସମୟର ଅର୍ଥ କ'ଣ ? ପ୍ରାଚୀନ ଯୁଗରେ ରାଜାମାନଙ୍କ ଅମଳରେ ଯେଉଁ କଥା ପାଇଁ ତିରିଶି ଚାଳିଶି ବର୍ଷ ଲାଗି ଯାଉଥିଲା, ଏବେ

ତାହା ଗୃହପାଞ୍ଚ ବର୍ଷ ଭିତରେ ହୋଇ ପାରୁଛି । ଏ ହେଉଛି ବିଜ୍ଞାନର ଯୁଗ । କୋଟି କୋଟି ଟଙ୍କାର ଖର୍ଚ୍ଚ ହେଉଛି । ପୂର୍ବର ସରକାର ଯେଉଁ ଚୁକ୍ତି ସବୁ କରି ଯାଉଛି, ନୂଆ ସରକାର ଆସିଲେ ତାକୁ ବଦଳାଇ ପାରୁ ନାହିଁ । ପୂର୍ବ ସରକାର ବାକି କାମକୁ ପରବର୍ତ୍ତୀ ସରକାର ଭାଙ୍ଗି ପାରୁନାହିଁ; ପୂରା କରୁଛି । ଏଣୁ ପାଞ୍ଚ ବର୍ଷ ପରେ ନିର୍ବାଚନ ହେଲେ କିଛି ଗୋଟାଏ ଖୁବ୍ ବଡ଼ ତଫାତ୍ ଦେଖାଯିବ, ଏପରି ଆଶା କରିବା ବୃଥା । ଉପରନ୍ତୁ ପାଞ୍ଚ ବର୍ଷ ଲାଗି ଅପେକ୍ଷା କରି ବସି ରହିଲେ ଦେଶ କୁଆଡ଼େ ନାହିଁ କୁଆଡ଼େ ଚାଲିଯିବ ।

ମନେକରନ୍ତୁ ଆଜି ରାଜଗୋପାଳଚାରୀଙ୍କ ହାତରେ ଭାରତବର୍ଷ ଥାଆନ୍ତା, ତେବେ ଆମେରିକା ପକ୍ଷକୁ ତାହା ଚାଲି ଯାଆନ୍ତାଣି । ମାତ୍ର ପଣ୍ଡିତ ନେହେରୁଙ୍କ ହାତରେ ଆଜ ଅଛି ବୋଲି ଭାରତବର୍ଷର ନିରପେକ୍ଷତା ରହିଛି । ଏ କ'ଣ ଗୋଟିଏ ଛୋଟିଆ ପାର୍ଥକ୍ୟ ? ଆପଣମାନେ ଏବେ ଦେଖିଲେ କେନ୍ଦ୍ରମଣ୍ଡଳରୁ କେତେକ ମନ୍ତ୍ରୀଙ୍କୁ ବାହାର କରାଗଲା । ଏତେଜଣ ମନ୍ତ୍ରୀଙ୍କୁ ବିଦା କରିଦେବା କ'ଣ ଗୋଟିଏ ଛୋଟିଆ ଶକ୍ତିର ନମୁନା ? ପୂର୍ବ କାଳରେ ଏହାଠାରୁ ବେଶୀ କ୍ଷମତା କ'ଣ ରାଜାଙ୍କ ହାତରେ ଥିଲା ? ଯଦି ଜଣେ ମନ୍ତ୍ରୀଙ୍କୁ ସେ ତଡ଼ି ଦେଉଥିଲେ, ତେବେ ଅନ୍ୟ ମନ୍ତ୍ରୀ ବା ସର୍ଦ୍ଦାରମାନେ ରାଜାଙ୍କ ବିରୁଦ୍ଧରେ ମେଳି ସୃଷ୍ଟି କରୁଥିଲେ । ମାତ୍ର ଆଜି ପଣ୍ଡିତ ନେହେରୁ ଯେତେ ସହଜରେ ମନ୍ତ୍ରୀମାନଙ୍କୁ ବିଦା କରିଦେଲେ, ରାଜୁଡ଼ା ଅମଳରେ ତାହା ହୋଇପାରିବା ଅସମ୍ଭବ ପରି ଥିଲା ।

## ଜନତନ୍ତ୍ରର ବୈଶିଷ୍ଟ୍ୟ କ'ଣ ?—

ଆମ ଦେଶକୁ ଗଣତନ୍ତ୍ର ଆସିବାର ମୂଳରେ ଏଇ ବିଶ୍ବାସ ଥିଲା ଯେ ଜନତାକୁ ଉତ୍ତମ ବୁଦ୍ଧି ମିଳିବ । ସେମାନେ ଶ୍ରେଣୀ

ଦଳ ପରି କାହାରି ଦ୍ୱାରା ଅଡ଼େଇ ହେବେ ନାହିଁ, ନିଜେ ନିଜର ଚିନ୍ତା କରିବେ । ଏଥିପାଇଁ ରାଜାମାନେ ବିଦାୟ ନେଲେ । କିନ୍ତୁ ତଥାପି ଶ୍ରେଣୀ ଦଳ ପରି ଆମେ ଅଛୁଁ । ଶ୍ରେଣୀ ଦଳ ଏବଂ ଆମ ମଧ୍ୟରେ ପାର୍ଥକ୍ୟ ସେତିକିବେଳେ ଆସିବ, ଯେତେବେଳେ ପଞ୍ଚାୟତ ସବୁ ଠିକ୍ ଢଙ୍ଗରେ ଚାଲିବ । ସୁତରାଂ ପଞ୍ଚାୟତ ହେଉଛି ସର୍ବୋଦୟର ଅତ୍ୟନ୍ତ ନିକଟବର୍ତ୍ତୀ । ମୁଁ ଏ ସବୁ କଥା ଆପଣମାନଙ୍କ ଆଗରେ ବିସ୍ତାରିତ ଭାବରେ ଏଇଥିପାଇଁ ରଖୁଛି ଯେ, ଯେଉଁ ଲୋକ ପ୍ରଭୂତ ପରିମାଣରେ ତାକୁ ଦାନ ମାଗେ, ପ୍ରଭୂତ ପରିମାଣରେ ଦାନ ଦେବାକୁ ପଡ଼େ । ଏଣୁ ବିଭିନ୍ନ ଦିଗରୁ ଖୋଲିକରି ଏ ବିଚାରକୁ ମୁଁ ଆପଣମାନଙ୍କୁ ବୁଝାଉଛି ।

ଆଜି ପଞ୍ଚାୟତମାନେ ଯେଉଁଭଳି ଢଙ୍ଗରେ ଚାଲୁଛନ୍ତି, ସେ ବିଷୟରେ ଚିନ୍ତା କରିଥିବା ଉଚିତ । ଯେମିତି ଗଣତନ୍ତ୍ରର ଉଦ୍ଦେଶ୍ୟ ଭଲ ହେଲେ ମଧ୍ୟ ତାହା ଆମ ଦେଶରେ ସାଧିତ ହୋଇ ପାରିଲା ନାହିଁ, ସେହିପରି ଗ୍ରାମପଞ୍ଚାୟତର ଉଦ୍ଦେଶ୍ୟ ଭଲ, ସେଥିରେ ସର୍ବୋଦୟର ଅନୁକୂଳ ବିଚାର ରହିଛି, କିନ୍ତୁ ଯେଉଁଭଳି ଭାବେ ତାହା ଗଠନ କରା ଯାଉଛି, ସେଥିରେ ତାହା କେବଳ ଝଗଡ଼ାର ସ୍ଥାନ ହୋଇ ରହିବ । ବରଂ ଦିଲ୍ଲୀ, କଟକ, ଆଉ ଭୁବନେଶ୍ୱରରେ ଭୋଟ ବଳରେ, ସଂଖ୍ୟାଧିକ, ସଂଖ୍ୟାନ୍ୟୂନର ଯେଉଁ ଦଳାଦଳି ଚାଲିଛି, ତାହା ପ୍ରତ୍ୟେକଟି ପଞ୍ଚାୟତକୁ ବ୍ୟାପିଯିବ ଅର୍ଥାତ୍ ମାରାମାରିର ଜାତୀୟକରଣ ହେବ ।

**ପଞ୍ଚାୟତର ଆଧାର ପ୍ରେମ ହେଉ—**

ଆଜିକାଲି ଜାତୀୟକରଣର ଗୋଟାଏ ବିଚାର ଆସିଛି । ବଡ଼ ବଡ଼ ଶିଳ୍ପ କାରଖାନା ସବୁକୁ public sector ବା ରାଷ୍ଟ୍ରର ମାଲିକାନା ଭିତରକୁ ଅଣା ଯାଉଛି । ପୁଣି ଏବେ ବ୍ୟାଙ୍କ ସବୁର

ଜାତୀୟକରଣ ପାଇଁ ଦାବୀ ମଧ୍ୟ ହେଉଛି । ସେହିପରି ଆଜ ମାତ୍ସର୍ଯ୍ୟର ଜାତୀୟକରଣ କରାଯାଉଛି । ପୂର୍ବେ ଏପରି ହେଉ ନ ଥିଲା । ରାଜା ଥିଲେ । ତାଙ୍କର ଅଳ୍ପ କେତେକ ପାତ୍ର ମନ୍ତ୍ରୀ ଥିଲେ । କ୍ଷମତାର ଉପଭୋଗ ସେତିକି କେତେଜଣ କରୁଥିଲେ ଓ ତାଙ୍କର ଭିତରେ ପରସ୍ପର ପ୍ରତି ମାତ୍ସର୍ଯ୍ୟ ସୀମାବଦ୍ଧ ଥିଲା । ମାତ୍ର ଏବେ ତାହା ଅଳ୍ପ ସମୟ ଭିତରେ ଗ୍ରାମଆଡ଼କୁ ବ୍ୟାପି ଯାଉଛି । ପ୍ରତ୍ୟେକଟି ପଞ୍ଚାୟତକୁ ଆସୁଛି । ଯେଉଁମାନେ କେବଳ ଦିଲ୍ଲୀ ବା ଭୁବନେଶ୍ୱରରେ ରହୁଛନ୍ତି, ସେହିମାନଙ୍କ ଭିତରେ ମାତ୍ସର୍ଯ୍ୟ ସୀମାବଦ୍ଧ ନ ରହି ଗାଁ ଗାଁରେ ଯେଉଁମାନେ ଅଧିକାରୀ ହେଉଛନ୍ତି, ସେମାନଙ୍କ ନିକଟକୁ ଆସୁଛି । ପ୍ରେମ କିମ୍ବା କରୁଣା ବଳରେ ସିନା ଗାଁର କାମ ଚାଲିବ । ମାତ୍ର ତାହା ମିଳିବ କେଉଁଠୁ ? ଉପରେ ରହୁଥିବା ଲୋକେ ତାହା ଦେଇପାରିବେ କି ? ଯେଉଁ ବସ୍ତୁ ଉପରେ ନାହିଁ, ତାହା ପୁଣି ସେମାନଙ୍କଠାରୁ ମିଳିପାରିବ କିପରି ? ଯାହା ମିଳିବାର କଥା, ଯେପରିକି କ୍ଷମତା, ଟିକସ ବସାଇବାର ଅଧିକାର —ଏସବୁ ସେମାନେ ଦେଇଛନ୍ତି । କିନ୍ତୁ ସ୍ନେହ ପ୍ରେମ ଭଳି ଜିନିଷ ସେମାନଙ୍କଠାରୁ ମିଳିପାରିବ ନାହିଁ । ଏବେ ସରକାର ପଞ୍ଚାୟତ-ମାନଙ୍କ ମାଧ୍ୟମରେ ଲୋକଙ୍କୁ ଶସ୍ୟ ଯୋଗାଉଛନ୍ତି । ମଝିରେ ପଞ୍ଚାୟତ କ'ଣ କରୁଛନ୍ତି ନା, ସରକାରଙ୍କ ଦର ଉପରେ ଆଉ ଟିକିଏ ଦର ଚଢ଼େଇ ଲୋକଙ୍କୁ ଦେଉଛନ୍ତି । ଫଳରେ ମଝିରେ କେତେକ ପଇସା ତାଙ୍କୁ ମିଳୁଛି । ରାମ୍ ରାମ୍ ! ଏ ପୁଣି କିପରି ଅଧିକାର ? ଖାଦ୍ୟ ମହଙ୍ଗା କରିବାର ଅଧିକାର ! ତାହାହେଲେ ତ ଗାଁ ଲୋକେ କହିବେ ଯେ, ଏ ପଞ୍ଚାୟତ ନ ଥିଲେ ବରଂ ଭଲ ହୋଇ ଥାଆନ୍ତା । ଖାଦ୍ୟ ଶସ୍ୟ ଆମେ ଟିକିଏ ଶସ୍ତାରେ ପାଆନ୍ତୁ । ଏପରି ଅବସ୍ଥାରେ ଲୋକଙ୍କର ଆଶୀର୍ବାଦ ପଞ୍ଚାୟତକୁ ମିଳିପାରିବ

କପରି ? ଆଜି ପଞ୍ଚାୟତମାନେ ବିଶ୍ୱାସ କରିପାରୁ ନାହାନ୍ତି ଯେ ଲୋକଙ୍କଠାରୁ ଦାନ ମିଳିପାରିବ ! ଯେତେବେଳେ ଲୋକେ ପଞ୍ଚାୟତ ପାଇଁ ଦାନ କରିବେ ସେତେବେଳେ ତାକୁ ବଳ ମିଳିବ ଏବଂ ଲୋକେ କହିବେ ଯେ, ଯେଉଁ ପଞ୍ଚାୟତ ଖାଦ୍ୟଶସ୍ୟକୁ ମହଙ୍ଗା କରୁଛି, ସେ ପଞ୍ଚାୟତରେ ଆମେ ପଶିବୁ ନାହିଁ । ମନେକରନ୍ତୁ, ମୁଁ କୌଣସି ଗ୍ରାମପଞ୍ଚାୟତରେ ସଭ୍ୟ ରହିଛି । ସେ ଗ୍ରାମପଞ୍ଚାୟତ ସରକାରର ଖାଦ୍ୟ ଶସ୍ୟକୁ ଆହୁରି ମହଙ୍ଗା କରନ୍ତୁ', ଏ କଥା ମୁଁ ସହିପାରନ୍ତି ନାହିଁ । କାରଣ ପଞ୍ଚାୟତର ଖାଦ୍ୟ ଶସ୍ୟକୁ ମହଙ୍ଗା କରିବା ପାଇଁ କୌଣସି ଅଧିକାର ନାହିଁ । ବଡ଼ ଦୁର୍ଭାଗ୍ୟର କଥା ଯେ, ପଞ୍ଚାୟତ ସବୁକୁ ଉପରୁ କ୍ଷମତା ମିଳିଛି । ଫଳରେ ତାହା କଳି ତକରାଳ ଏବଂ କ୍ଷମତା ରାଜନୀତିର କ୍ଷେତ୍ର ହେଉଛି । ମାତ୍ର ପ୍ରକୃତରେ ତାହାର ସୃଷ୍ଟି ଲୋକଙ୍କର ତ୍ୟାଗ ଭିତରୁ ହିଁ ହେବା ଉଚିତ ।

ପଞ୍ଚାୟତର ପରିସର—

ଏବେ ଆଜ ଏକ ଆଶ୍ଚର୍ଯ୍ୟଜନକ କଥା ନବବାବୁ କହୁଥିଲେ । ଗ୍ରାମପଞ୍ଚାୟତର ଆୟତନ କେତେ ବଡ଼ ହେବା ଉଚିତ୍—ଏ ସମ୍ପର୍କରେ ବିଚାର ଦେବାକୁ କାଠ୍‌ଜୁକମିଟି ଗଠନ କରାଯାଇ ଥିଲା । ଉକ୍ତ କମିଟି ମତ ଦେଇଥିଲେ ଯେ ପାଞ୍ଚହଜାର ଲୋକସଂଖ୍ୟା ପିଛା ଗୋଟିଏ ଗୋଟିଏ ପଞ୍ଚାୟତ ଗଠନ କରାଯିବା ଦରକାର । ଏହା ଶୁଣି ମୁଁ ତାଙ୍କୁ କହିଲି, "କାହିଁକି, ଛ'ହଜାର ଦଶ ହଜାର ଲୋକସଂଖ୍ୟା ପିଛା ଗ୍ରାମ ପଞ୍ଚାୟତ ଗଢ଼ାଗଲେ କ୍ଷତି କ'ଣ ?

ଆପଣମାନେ ଜାଣିଥିବେ ଯେ, ମହାରାଷ୍ଟ୍ରର ଗାଁସବୁ ଓଡ଼ିଶାର ଗାଁମାନଙ୍କଠାରୁ ବଡ଼ । ସେଠାରେ ଏକହଜାର ଲୋକଙ୍କୁ ପିଛା

ଗ୍ରାମପଞ୍ଚାୟତ ଗଠନ କରାଯାଉଛି । ଫଳରେ ଗୋଟିଏ, ଦୁଇଟି କମ୍ବା ଖୁବ୍ ବେଶୀରେ ତନୋଟିଠାରୁ ଅଧିକ ନଗ ଟିଏ ପଞ୍ଚାୟତ ଗ୍ରାମ ଭିତରକୁ ଆସି ପାରୁ ନାହିଁ । ମହାରାଷ୍ଟ୍ରରେ ସହର-ବାସିନ୍ଦା ଲୋକଙ୍କ ପରିମାଣ ଶହକେ ନୋଉଏ, ଗୁଜୁରାଟରେ ଶହକେ ପଚିଶ, ମାତ୍ର ଓଡ଼ିଶାରେ ହେଉଛି ଶହକେ ଛ' । ଛୋଟ ଛୋଟ ଗାଁର ଇଏ ପ୍ରଦେଶ । ଏଠି ଯଦି ପାଞ୍ଚ ଛ'ହଜାରର ଜନସଂଖ୍ୟା ଘେନି ଗ୍ରାମପଞ୍ଚାୟତ ଗଠନ କରାଯାଏ, ତେବେ ତା' ଭିତରକୁ କୋଡ଼ିଏ ପଚିଶ ସ୍ଥାନରେ ଗୁଳାଏ, ପଚିଶ ଖଣ୍ଡ ଗାଁ ଆସିଯିବ । ଗାଁମାନେ ପରସ୍ପରଠାରୁ ଦୂରରେ ଥିବେ । ବଡ଼ ଗୋଟାଏ ଗ୍ରାମପଞ୍ଚାୟତ ଦେହରେ ସେମାନେ ଏକାଠି ହେବେ ତ, ତାହାକୁ କ୍ଷମତାର ଏକ କ୍ଷେତ୍ର କରି ଥୋଇବେ ସିନା, ପରସ୍ପର ପ୍ରୀତିର କ୍ଷେତ୍ର ତାହା ହେବ ନାହିଁ । ଏଣୁ ଗାଁମାନଙ୍କର କାମ କରିବା ଲାଗି ଛୋଟିଆ ଗୋଟେ ଗ୍ରୁପ୍ ଗୋଷ୍ଠୀ ରହିବା ଉଚିତ । ହଁ, କେତେକ କାମ ପାଇଁ, ଯେପରିକି ବଣରୁ କାଠ କାଟିବାକୁ କୋ-ଅପରେଟିଭ କରିବା ପାଇଁ, ଅନ୍ୟ ପ୍ରଦେଶକୁ ଗୁଡ଼ଲ ପଠାଇବା ପାଇଁ, ରାସ୍ତା ତିଆରି କରିବା ପାଇଁ, ଚମଡ଼ା କଷିବା ପାଇଁ—ବଡ଼ ବଡ଼ ୟୁନିଟ୍ ଦରକାର । ସେଥିପାଇଁ ସ୍ୱତନ୍ତ୍ର ଯୋଜନା କରାଯିବା ଦରକାର । ମାତ୍ର ସବୁ ଗାଁରେ ତ ଆଉ ଯୋତା କଷ କରିବା ଦରକାର ନାହିଁ । ଏଣୁ ଯେମିତି ଆମେ ଲୁଗା ବୁଣିସାରି ଦରଜୀ ପାଖକୁ ନେଇ ସିଲାଇ କରି ଆଣୁଛୁ, ସେହିପରି ଗାଁ ଗାଁରେ ଚମଡ଼ା ଗୁଲି ଅନ୍ୟ ସ୍ଥାନରୁ ତାକୁ କଷକରି ଅଣା ଯାଇପାରେ । ଏଣୁ କେତେକ କାମ, ଆମକୁ ଜିଲ୍ଲା, ସହର, ପ୍ରଦେଶ ଓ ରାଷ୍ଟ୍ରୀୟ ସ୍ତରରେ ଠିଆ କରାଇବାକୁ ପଡ଼ିବ । ମାତ୍ର ଏକହଜାର ଲୋକରୁ ଅଧିକ ସଂଖ୍ୟା ଘେନି ଗ୍ରାମପଞ୍ଚାୟତ ଗଠନ କରାଯିବା ଅନୁଚିତ । ତ' ନ ହେଲେ

ଏପରି କୌଣସି ଲୋକସଂଖ୍ୟା ନିର୍ଣ୍ଣୟ କରାଯାଉ ଯେପରିକି ସେମାନେ ପରସ୍ପର ସହିତ ପ୍ରେମସମ୍ପର୍କ ରଖି ପାରିବେ ଓ ବାରମ୍ବାର ଏକାଠି ବସି ବିଚାର କରି ପାରିବେ । ସଂଖ୍ୟାଧିକ ବା ସଂଖ୍ୟାନ୍ୟୂନତା ବଦଳରେ ସର୍ବସମ୍ମତିଦ୍ୱାରା ସେମାନେ ନିଜର କାମ ଚଳାଇବେ । ପୂର୍ବେ ଏଠି ପଞ୍ଚପରମେଶ୍ୱର ପ୍ରଥା ପ୍ରଚଳିତ ଥିଲା ଅର୍ଥାତ୍ ଏକମତ ହୋଇ ପାଞ୍ଚଜଣ କୌଣସି କଥା କହିଦେଲେ, ତାକୁ ଭଗବାନଙ୍କର ନିଷ୍ପତ୍ତି ବୋଲି ଗାଁଲୋକେ ମାନି ନେଉଥିଲେ । ମାତ୍ର ଏବେ ତ ପାଞ୍ଚଜଣ ଭିତରୁ ଦୁଇଜଣଙ୍କ ବିରୁଦ୍ଧରେ ତିନିଜଣ ଏକମତ ହୋଇ କହିଦେଲେ ପରମେଶ୍ୱରଙ୍କ ନ୍ୟାୟ ବୋଲି ଧରି ନିଆଯାଉଛି ! ଏଣୁ ଏ ଯେଉଁ ନୂଆ ପରମେଶ୍ୱରଙ୍କୁ ଆମେ ଆମଦାନୀ (import) କରିଛୁ, ତାହା ଅତ୍ୟନ୍ତ ବିପଜ୍ଜନକ । ପ୍ରତ୍ୟେକ ସ୍ଥାନରେ ତାହା ସଂଖ୍ୟାଧିକ ଓ ସଂଖ୍ୟାନ୍ୟୂନ—ଏମିତି ଭେଦ ସୃଷ୍ଟି କରୁଛି । ସମାଧାନ ତ ଦେଇ ପାରୁନାହିଁ । କୁହାଯାଉଛି ଯେ, ଏହାଦ୍ୱାରା ନ୍ୟାୟ ହେଉଛି ।

ଆରେ ଭାଇ ! କେହି କ'ଣ କାହାକୁ ନ୍ୟାୟ ଦେଇପାରେ ? ନ୍ୟାୟ ଦେବାଲୋକ ତ କେବଳ ଭଗବାନ୍ । ଆମେ ପରସ୍ପର ଭିତରେ ସମାଧାନ କରି ପାରୁ ମାତ୍ର ଅଧିକ ସଂଖ୍ୟା ଓ ଅଳ୍ପ ସଂଖ୍ୟାନେଇ ପ୍ରଶ୍ନ ଉଠିଲେ ସେଥିରୁ ଝଗଡ଼ା ସୃଷ୍ଟିହୁଏ । ସଂଖ୍ୟାନ୍ୟୂନ ଲୋକେ ସବୁବେଳେ ସଂଖ୍ୟାଧିକ ହେବାର ଉଦ୍ୟମରେ ଥାଆନ୍ତି । ଏଣୁ ଉଭୟ ଗୋଷ୍ଠୀ ଭିତରେ ବିଦ୍ୱେଷ ବଢ଼େ । ହୁଏତ ଦିଲ୍ଲୀ, ଭୁବନେଶ୍ୱର ପରି ବଡ଼ ବଡ଼ କ୍ଷେତ୍ରରେ ଏ କଥା ଜଣା ଯାଏନା, କିନ୍ତୁ ଗାଁପରି ଛୋଟିଆ ସ୍ଥାନରେ ଖୁବ୍ ହାନି କରେ । ଏଣୁ ସଂଖ୍ୟାଧିକ ଓ ସଂଖ୍ୟାନ୍ୟୂନର ପ୍ରଶ୍ନ ଉପର କ୍ଷେତ୍ରରେ ଚାଲୁଥାଉ ପଛକେ ଅନ୍ତତଃ ତଳ କ୍ଷେତ୍ରରେ ତାହା ବନ୍ଦ ହେଉ ।

ଗ୍ରାମସଭା ଗ୍ରାମପଞ୍ଚାୟତକୁ
ଜନତାର ଅନୁକୂଳ କରିବ—

ଏବେ ଆସାମ ପ୍ରଦେଶରେ ଯେଉଁ ଗ୍ରାମଦାନ ଆଇନ କରା-ଯାଇଛି, ସେଥିରେ ଗ୍ରାମଦାନ ଗାଁକୁ ଗ୍ରାମପଞ୍ଚାୟତର ଅଧିକାର ଦିଆଯାଇଛି । ଏଭଳି ଆଇନ୍ ମଧ୍ୟ ଏଠାରେ କରା ଯାଇପାରେ । କାରଣ ଗ୍ରାମଦାନୀ ଗାଁର ଲୋକେ ନିଜ ଗାଁକୁ ଗୋଟାଏ ପରିବାର କରି ଗଢ଼ିବାର ଉଦ୍ୟମ କରୁଛନ୍ତି ଓ ସେଥିରୁ ଗୋଟାଏ ବଡ଼ ଶକ୍ତିର ସୃଷ୍ଟି ହୋଇଛି । ତେଣିକି ପାଞ୍ଚ ପଚଶଟା ଗାଁ ଏକାଠି ହୋଇ ବଡ଼ ଗାଁ କରି ପାରନ୍ତି । ସବୁ ଗାଁର ସାଧାରଣ ସମସ୍ୟାକୁ ସମାଧାନ କଲେ ମାସରେ ଥରେ ଦୁଇଥର ପରସ୍ପରକୁ ଭେଟିଲେ ଓ ଗାଁ ମାନଙ୍କର ଭଲମନ୍ଦ ହାନିଲାଭ ସବୁକୁ ଗ୍ଳେଠ ଗ୍ଳେଠ ଗ୍ରାମଦାନୀ ଗାଁ ମାନଙ୍କର ଗ୍ରାମସଭାମାନେ ବୁଝିଲେ ଯାଇ ଆଜିର ଏ ଗ୍ରାମପଞ୍ଚାୟତ ଜନତାର ଅନୁକୂଳ ହେବ ।

୧—ଗ୍ଳେଠ ୟୁନିଟରୁ ଆରମ୍ଭ କରିବା ୨—ପ୍ରେମର ଆନ୍ଦୋଳନ, ଗ୍ରାମଦାନ ଆନ୍ଦୋଳନ ଦ୍ୱାରା ଭୂମିହୀନଙ୍କୁ ଜମି ଦେବା ଓ ପ୍ରତିବର୍ଷ ଉତ୍ପନ୍ନ ଫସଲର କୋଡ଼ିଏ ଭାଗରୁ ଭାଗେ ଗ୍ରାମସଭାକୁ ଦାନ କରିବା, ୩—ଟିକସ ବଦଳରେ ଦାନ ପ୍ରଥା ଚଳାଇବା, ୪—ପ୍ରତିଘରୁ ଜଣେ ଜଣେ ଲୋକ ନେଇ ଗ୍ରାମସଭା ଗଠନ କରିବା—ଏ ହେଉଛି ଗ୍ରାମଦାନର ମୂଳକଥା । ତେଣିକି ଗ୍ରାମସଭାରେ ପରିବାରରୁ ବଡ଼ପୁଅ ପ୍ରତିନିଧିତ୍ୱ କରିବ କି ବୁଢ଼ା ବାପ ପ୍ରତିନିଧିତ୍ୱ କରିବ ସେ କଥା ପରିବାର ଭୋଟ୍ ଦେଇ ବୁଝିବ । ମାତ୍ର ଗାଁର ସବୁତକ ବଡ଼ର ସର୍ବସମ୍ମତି ଦ୍ୱାରା ହେବ । ତେବେ ଯାଇ ଗ୍ରାମପଞ୍ଚାୟତ ସବୁ ସ୍ୱରାଜ୍ୟର ଗୋଟିଏ ଗୋଟିଏ ଉତ୍ତମ ନମୁନା ହୋଇ ପାରିବେ ।

ଦ୍ୱିତୀୟ ପ୍ରଶ୍ନ କରାଯାଇଛି ଯେ ଗ୍ରାମପଞ୍ଚାୟତମାନେ ସର୍ବୋଦୟ ସମାଜ ରଚନାରେ କି ସହଯୋଗ କରି ପାରିବେ ? ପ୍ରଥମେ ସବୁ ଗ୍ରାମପଞ୍ଚାୟତ ଠିକ୍ କରିଦିଅନ୍ତୁ ଯେ ତାଙ୍କର ପ୍ରତ୍ୟେକଟି ଗାଁକୁ ସେମାନେ ଗ୍ରାମଦାନ ଭିତରକୁ ଆଣିବେ । ପଞ୍ଚାୟତର ଶକ୍ତି ଖୁବ୍ ବେଶୀ । ଏଣୁ ଆମେ ଏ ଆନ୍ଦୋଳନ ପାଇଁ ତା'ର ସାହାଯ୍ୟ ଗ୍ରହୁଁ ନାହୁଁ । ପରିସ୍ଥିତି ତ ଏଭଳି ହେବା ଉଚିତ ଯେ ପଞ୍ଚାୟତ ବାଲା ଆସି ଆମକୁ ଡାକନ୍ତେ ଯେ 'ଆସନ୍ତୁ ! ଆମକୁ ସର୍ବୋଦୟର ବିଚାର ବୁଝାନ୍ତୁ ।' ମୁଁ ତ ଏଠି ରହୁନାହିଁ । ଆପଣମାନଙ୍କ ପାଖରେ ନବବାବୁଙ୍କ ପରି ଲୋକ ଅଛନ୍ତି । ମାଳତୀ ଦେବୀ ଅଛନ୍ତି । ସେମାନଙ୍କୁ ଡାକନ୍ତୁ । କାରଣ ଏ କାମ ମୋର ନୁହେଁ । ଏହା ହେଉଛି ଆପଣମାନଙ୍କର । ଏହାଦ୍ୱାରା ଗ୍ରାମପଞ୍ଚାୟତ ଶକ୍ତିଶାଳୀ ହେବ ଓ କେବଳ ଗାଁ କାହିଁକି ସାରା ଦେଶଟା ଆପଣମାନଙ୍କର ହାତକୁ ଆସିବ । କାରଣ ଏ ଦେଶ ଭୋଟର ମାନଙ୍କର ଦେଶ । ମନେକରନ୍ତୁ ଆପଣଙ୍କ ଗାଁ ଗ୍ରାମଦାନ ହେଲା । ଦଶ ପାଞ୍ଚଖଣ୍ଡ ଗାଁର ଲୋକେ ଠିକ୍ କଲେ ଯେ ଅମୁକ ଲୋକଙ୍କୁ ବାଛିକରି ପଠାଇବା । କାରଣ ସେମାନେ ମନେକଲେ ଯେ ଲୋକଙ୍କ ପାଇଁ ଆପଣ କଣ କାମ କରିଛନ୍ତି । ତାହାହେଲେ ସବୁତକ ଦଳୀୟ ଝଗଡ଼ା ଶେଷ ହୋଇଯିବ । ମାତ୍ର ଆଜି ଗାଁର କଥା ରହୁଛି କି ? ତା'ର ଉପଯୋଗ ତ କେବଳ ନିର୍ବାଚନ ପାଇଁ ହେଉଛି !

ଆମ ଦେଶରେ ଭୋଟଦ୍ୱାରା

ଟଣାଟଣିର ପ୍ରହସନ ଚାଲିଛି—

ମାଡ୍ରାଜର ଗୋଟିଏ ଗାଁ କଥା ଶୁଣନ୍ତୁ । ଛୋଟିଆ ଗାଁଟିଏ ସେ । ଆମର ରହଣୀ ସେ ଗାଁରେ ପଡ଼ିଥାଏ । ମୁଁ ସେଠାଲୋକଙ୍କୁ

ପଗ୍ଚରିଲ ଯେ "ଏ ଗାଁକୁ ବାହାରର କୌଣସି ନେତା କେବେ ଆସିଛନ୍ତି ?" ଉତ୍ତର ମିଳିଲା, "ନାଁ, ଆସିନାହାନ୍ତି ।"

"ଏ କିପରି କଥା ? ନିର୍ବାଚନବେଳେ ବାହାରର କୌଣସି ନେତା ଆସି ନାହାନ୍ତି ?"

"ହଁ, ହଁ, ଆସିଥିଲେ ।"

"କ'ଣ କହିଲେ ସେମାନେ ?"

"କହିଲେ ଯେ ଭୋଟ୍ ଦିଅ । ଆମେ ସବୁ ଭୋଟ୍ ଦେଲୁ । ସେମାନେ ତିନୋଟା ବାକ୍ସ ବସାଇଥିଲେ । ଏଣୁ ଆମେ ଗାଁ ଲୋକଯାକ ସେମାନଙ୍କ ତିନୋଟିଯାକ ବାକ୍ସରେ ଭୋଟ୍ ଦେଲୁ । କିଏ ହଳଦିଆ ବାକ୍ସରେ ଦେଲା, କିଏ ନାଲି ବାକ୍ସରେ ଦେଲା ତ ଆଉ କିଏ ବାଇଗଣି ବାକ୍ସରେ ଦେଲା । କିନ୍ତୁ ଆମେ ସମସ୍ତେ ବାଣ୍ଟିକରି ଭୋଟ୍ ଦେଲୁ । ତେବେ ସୁଦ୍ଧା ଆମ ଗାଁର କୌଣସି ଲାଭ ତାହା'ଦ୍ୱାରା ହେଲା ନାହିଁ । ଭୋଟ୍ ପରଠାରୁ ଆମ ଏଠାକୁ ସେମାନେ ଆଉ କେହି ହେଲେ ଆସିନାହାନ୍ତି ।"

—ଏଇଥିରୁ ବୁଝନ୍ତୁ ଯେ ଅବସ୍ଥାଟା କ'ଣ ! ଗାଁ ଗାଁରେ ବସ୍ତୁତଃ ଅଜ୍ଞ ଲୋକ ରହିଛନ୍ତି । ସେ ଗାଁର ଲୋକେ ମନେ କଲେ ଯେ ଏ ତିନୋଟି ବାକ୍ସ ହେଉଛି ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ତିନୋଟି ପ୍ରତିମୂର୍ତ୍ତି । ଜଣକୁ ପୂଜାକଲେ ଅନ୍ୟ ଦୁଇଜଣ କାଳେ ଅସନ୍ତୁଷ୍ଟ ହେବେ, ସେଥିପାଇଁ ସେମାନେ ଭୋଟ୍ କାଗଜକୁ ବାଣ୍ଟିକରି ସବୁ ବାକ୍ସରେ ପକାଇଲେ ।

## ଗ୍ରାମଦାନ ସରକାରୀ ଯୋଜନା ରଙ୍ଗକୁ ବଦଳାଇବ—

ଯେତେବେଳେ ପ୍ରଦେଶର ଅଧାରୁ ଅଧିକ ଗାଁ ଗ୍ରାମଦାନୀ ହୋଇଯିବ, ସେତେବେଳେ ସରକାରୀ ଯୋଜନାର ରଙ୍ଗ ବଦଳି ଯିବ । ଯୋଜନା ଗାଁ ଲାଗି ହେବ । ଏକଥା କେବଳ କଥାରେ କହିଲେ ହେବ ନାହିଁ । କାମରେ କଲେ ଯାଇ ହେବ । ଏଣୁ ଗ୍ରାମପଞ୍ଚାୟତମାନେ ଏହାକୁ ନିଜର କାମ ବୋଲି ମନେକରି କରି-ନେବା ଉଚିତ ।

ଚତୁର୍ଥ ପ୍ରଶ୍ନରେ ମୋତେ ପଚରାଯାଉଛି ଯେ, ଭୂଦାନକର୍ମୀ ପଞ୍ଚାୟତ ସମିତି ବୈଠକକୁ ଆସିବେ କି ? ହଁ, ଇଏ ଏକ ଯଥାର୍ଥ ପ୍ରଶ୍ନ । ଭୂଦାନକର୍ମୀମାନେ ପଞ୍ଚାୟତ ସମିତି ବୈଠକକୁ ଆସିବେ । ଆସିବା ଉଚିତ ମଧ୍ୟ । ମାତ୍ର ସେମାନଙ୍କ ଉପରେ ଖାଲି ଭରସା ରଖିଲେ ଚଳିବ ନାହିଁ । ଯଦି ଆପଣମାନେ ସେମାନଙ୍କ ଉପରେ ଭରସା ରଖିବେ, ତାହାହେଲେ ସ୍ୱରାଜ୍ୟ ହେବା ବଦଳରେ ବିନୋବା ରାଜ୍ୟର ପ୍ରତିଷ୍ଠା ହେବ ଯାହାକି ମୁଁ ଚାହେଁ ନାହିଁ । ଏଣୁ ଅମୁକ ଲୋକଙ୍କୁ ଡାକିଲୁ, ସେ ଆସିଲେ ନାହିଁ, ସେଇଥିପାଇଁ କାମ ଅଟକି ଗଲା—ଏଭଳି ବିଚାର ରଖନ୍ତୁ ନାହିଁ ।

ପୁଣି ପଞ୍ଚମ ପ୍ରଶ୍ନ ହୋଇଛି, "ଗାଁ ଗାଁରେ ଯୁବକ ସଂଘ ପ୍ରଭୃତି ଯେଉଁ ସବୁ ଅନୁଷ୍ଠାନ ରହିଛି, ତାହାପାଇଁ ଭୂଦାନ ମିଳିଥିବା ଜମିରୁ କିଛି ଦିଆଯାଇ ପାରିବ କି ? ବୋଧହୁଏ ଏହି ଦୃଷ୍ଟିରୁ ଏ ପ୍ରଶ୍ନ କରାଯାଇଛି ଯେ—ବିନୋବାଜୀ ହେଉଛନ୍ତି ଜଣେ ବଡ଼ ଜମିଦାର ଓ ତାଙ୍କୁ ମାଗିଲେ ଜମି ମିଳିବ । କିନ୍ତୁ ପ୍ରକୃତରେ ଏ ଜମି ହେଉଛି ଆପଣମାନଙ୍କର । ଯଦି ଆପଣମାନେ ଚାହିଁବେ, ତାହାହେଲେ ସେ

ଅନୁଷ୍ଠାନକୁ ନିଷ୍ଚୟ ମିଳିବ । କିନ୍ତୁ ଏଥିପାଇଁ ଆପଣମାନଙ୍କୁ ଗୋଟିଏ ସର୍ତ୍ତ ମାନିବାକୁ ହେବ ।

ଭୂଦାନ ଜମି କିପରି ବଣ୍ଟାଯିବ—

ମନେକରନ୍ତୁ, ଗୋଟିଏ ସ୍କୁଲକୁ ଆପଣ ପାଞ୍ଚ ଏକର ଜମି ଦେବାକୁ ଚାହିଁଲେ । ଭଲ କଥା, ଦିଅନ୍ତୁ । କିନ୍ତୁ ସର୍ତ୍ତ ଏଇଆ ରଖାଯିବ ଯେ, ସ୍କୁଲର ଶିକ୍ଷକ ଏବଂ ପିଲାମାନେ ମିଶି ସେ ଜମିରେ ମିହନ୍ତ କରିବେ । ତା'ର ଉତ୍ପାଦନ ପିଲାମାନଙ୍କୁ ମିଳିବ । ଥରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ (R.S.S)ର ଗୋଟିଏ ଆଖଡ଼ାକୁ ମୁଁ ଯାଇଥିଲି । ମୁଁ ତ ମଣିଷକୁ ଦେଖେ । ସେ କେଉଁ ବର୍ଗର—ଏ କଥା ଦେଖେ ନାହିଁ । କିନ୍ତୁ ସେ ଆଖଡ଼ାଟି ରାଷ୍ଟ୍ରୀୟ ସ୍ୱୟଂ ସେବକ ଅନୁଷ୍ଠାନ ଚଳାଉଥିଲେ ବୋଲି ତାଙ୍କ କଥା ମୁଁ ଏଠି କହୁଛି । ସେଠାରେ ସେମାନେ ପ୍ରତି ଛାତ୍ରଠାରୁ ମାସିକ ଆଠଅଣା ପଇସା ନେଉଥିଲେ । ପୁଣି କାମ ମଧ୍ୟ କରାଉ ଥିଲେ । ମୁଁ ତାଙ୍କୁ କହିଲି "ଏକ ଓଲଟା କଥା ? ଆପଣ ପ୍ରତିଦିନ ପିଲାମାନଙ୍କୁ ମିହନ୍ତ କରାଉଛନ୍ତି ପୁଣି ମାସ ଶେଷରେ ଆଠଅଣା ପଇସା ନେଉଛନ୍ତି ? ଦିନକୁ ଯଦି ସେମାନଙ୍କଠାରୁ ଏକ ଘଣ୍ଟା କାମ କରାଉଥାନ୍ତି, ତାହାହେଲେ ମାସ ଶେଷରେ ସେମାନଙ୍କୁ ତ ଆପଣ ଦୁଇ ଟଙ୍କା ଦେବାର କଥା । ଓଲଟି ପଇସା ନେଉଛନ୍ତି କିପରି ?" ସେମାନେ ଉତ୍ତର ଦେଲେ, "ପିଲାମାନେ କାମ କରୁ ନାହାନ୍ତି ସେ ବ୍ୟାୟାମ କରୁଛନ୍ତି ।"

"ବ୍ୟାୟାମ କରୁଛନ୍ତିର ଅର୍ଥ କ'ଣ ?" 'ଉଠ-ବସ, ଦଣ୍ଡ ବୈଠକ, କୁସ୍ତି କସ୍‌ରତ୍ କରୁଛନ୍ତି ।" "ମଲା ଯା, ଏ ଗୁଡ଼ାକ ଖାଲି ମାଖୁନା ବ୍ୟାୟାମ । ଆପଣମାନେ କୁସ୍ତି ଆଖଡ଼ା ଖୋଲୁଛନ୍ତି, କୃଷି କରାଉ ନାହାନ୍ତି ? କୃଷିଠାରୁ ଉତ୍କୃଷ୍ଟ ବ୍ୟାୟାମ

ଆଜ କଣ ଅଛି ? ପିଲଙ୍କୁ ଲଗାଇ ଖୋଲା ପବନରେ ଗୃଷ କରନ୍ତୁ, ଜମିରେ ପାଣି ମଡ଼ାନ୍ତୁ । ବଳଦଦ୍ୱାରା ହଳ ନ କରି ନିଜେ ମାଟି ଖୋଳନ୍ତୁ ଫସଲ ଫଳ ନ୍ତୁ—ଦେଖିବେ ଯେ ତାର ଆମଦାନୀ ମାସକୁ ଦୁଇ ଟଙ୍କାରୁ କଦାପି ଊଣା ହେବ ନାହିଁ । ମାତ୍ର ଏବେ ଯେଉଁ ବ୍ୟାପ୍ତାମ କରାଉଛନ୍ତି, ସେଥିରେ ପିଲମାନେ କାମକୁ କାମ କରୁଛନ୍ତି ପୁଣି ଆଠ ଅଣା ଲେଖାଏଁ ପଇସା ବ ଦେବାକୁ ହେଉଛି । ଏହା କିପରି କଥା ?

କହୁବାର ତାତ୍ପର୍ଯ୍ୟ ହେଉଛି ଆପଣ ଯଦି ଗୃହିଁବେ; ତା’ହେଲେ ଜମି ନିଶ୍ଚୟ ମିଳବ ଏବଂ ମିଳବା ମଧ୍ୟ ଉଚିତ । ମାତ୍ର ତହିଁରେ ଲୋକେ ନିଜେ ପରିଶ୍ରମ କରିବା ଦରକାର । ହଁ; ହୋଇପାରେ ଯେ, କେବଳ ଟିକଏ ଶ୍ରମ-ପଙ୍ଗୁ ଲୋକ, ଜମିରେ ପୂରା ମିହନ୍ତ କରି ପାରିବ ନାହିଁ । ଏଣୁ ସାହାଯ୍ୟକାରୀ ରଖିପାରନ୍ତି । ବେଳେବେଳେ ସେ ନିଜେ ମଧ୍ୟ ଯାଇ ଖଟିବ ।

ଆମ ପାଖରେ ଭୂଦାନ ଜମିକୁ ରଖି ବସିବାଟା ଠିକ୍ ହେଇ ନାହିଁ । ଏ ଭୁଲ ଆମେ କରି ପକେଇଲୁ । କାରଣ ଆମେ ଭାବିଥିଲୁ ଯେ, ଆମର ଲୋକ ଟିକଏ ହେପାଜତ ନ କଲେ ଠିକ୍ ଢଙ୍ଗରେ ଜମିର ବଣ୍ଟନ ହୋଇ ପାରିବ ନାହିଁ ବା ପ୍ରକୃତ ଲୋକଙ୍କୁ ତାହା ମିଳବ ନାହିଁ । କାରଣ ତା’ର ଏକ ତୃତୀୟାଂଶ ହରିଜନମାନଙ୍କୁ ଦିଆଯିବା କଥା ସେଥିରେ ରହିଥିଲ । ଏଥିପାଇଁ ଆମେ ଜମିର ବଣ୍ଟନ କରିବା ଦାୟିତ୍ୱ ଭୂଦାନ ସମିତି ହାତକୁ ଦେଇଥିଲୁ ।

ମାତ୍ର ଏବେ ତ ଗ୍ରାମସଭା ଗଢ଼ାଯିବ । ଗାଁ ଗାଁରେ ଗ୍ରାମଦାନ ହେବ । ଏଣୁ, ଏଣିକି ଯେଉଁ ଲୋକଙ୍କୁ ଜମି ମିଳୁ ବୋଲି ମାଲିକ ଗୃହିଁବେ, ତାକୁ ସେ ନିଜର ଇଚ୍ଛା ଅନୁଯାୟୀ ଦାନ କରି ପାରିବେ ।

( ତା ୨୧-୧୦-୬୩ରେ ରାଜଗାଙ୍ଗପୁରଠାରେ ସୁନ୍ଦରଗଡ଼ ଜିଲ୍ଲା ପଞ୍ଚାୟତ କର୍ମକର୍ତ୍ତାଙ୍କୁ ପ୍ରଦତ୍ତ ଭାଷଣ )

## ଗ୍ରାମସ୍ୱରାଜ୍ୟ ବିନା ପଞ୍ଚାୟତିରାଜ ବିଫଳ ହେବ

ଯୋଜନାର ମୂଳାଧାର କରୁଣା ହେବା ଉଚିତ—

ଆପଣମାନଙ୍କ ସହିତ କଥାବାର୍ତ୍ତା ହେବାର ସୁଯୋଗ ମିଳି ଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ । ଏ ଦେଶ ଆପଣମାନଙ୍କଠାରୁ ବହୁତ ବଡ଼ ବଡ଼ କଥା ପ୍ରତ୍ୟାଶା କରୁଛି । ସେହି ପ୍ରତ୍ୟାଶା ଅନୁସାରେ କାମ ହୋଇପାରିଲେ ଗାଁଗୁଡ଼ିକୁ ଆମେ ଭଲଭାବରେ ଛିଡ଼ା କରିପାରିବା । ସେଥିପାଇଁ ଯେଉଁ ଯେଉଁ ସ୍ଥାନରେ ମୋତେ ପଞ୍ଚାୟତି ଓ ବିକାଶ ଯୋଜନାବାଲାଙ୍କ ସହିତ କଥାବାର୍ତ୍ତା ହେବାର ସୁଯୋଗ ମିଳିଛି, ସେଠାରେ ସେ ସୁଯୋଗ ମୁଁ ଗ୍ରହଣ କରିଛି । ଏମାନଙ୍କ ସହିତ କଥାବାର୍ତ୍ତା ହେବାବେଳେ ମୁଁ ଆମର ସମାଜ— ଯେଉଁ ସମାଜର ନାମ ଆମେ ସର୍ବୋଦୟ ସମାଜ ଦେଇଛୁ— ତାହାର ସଙ୍ଗେ କଥାବାର୍ତ୍ତା କରୁଥିବାଭଳି ବୋଧ କରେ । ଆପଣ-ମାନେ କେତେକ ପ୍ରଶ୍ନ ପଚାରିଛନ୍ତି, ଯଥା— "ଏକ୍‌ସଟେନସନ କାମ ଓ ସର୍ବୋଦୟର ଉଦ୍ଦେଶ୍ୟ ଏକା ବୋଲି ମନେ ହେଉଛି । ଏପରି ସ୍ଥଳେ ଦୁହେଁ ମିଶିଯାଇ ଏ ବିକାଶ ଯୋଜନା ପ୍ରତି ସର୍ବସେବା ସଂଘ ଓ ଭୂଦାନ ଗ୍ରାମଦାନ ମଣ୍ଡଳର ପୂରା ସମର୍ଥନ ମିଳିଲେ କପରି ହୁଅନ୍ତା ?"

କଥା ହେଉଛି ଅନ୍ୟ ପକ୍ଷରୁ ମଧ୍ୟ ଠିକ୍ ଏହି ଦାବୀ ହେଉଛି । ସର୍ବସେବା ସଂଘ ଓ ଭୂଦାନ କର୍ମୀମାନେ କହୁଛନ୍ତି ଯେ ଆମକୁ ବିକାଶ ଯୋଜନାବାଲା ଓ ପଞ୍ଚାୟତିବାଲାଙ୍କ ସମର୍ଥନ ମିଳିବା ଉଚିତ । ଏବେ ଆପଣଙ୍କର ଏ ଦାବୀ ଦେଖି ମନେହେଉଛି ଦୁହିଁଙ୍କ

ମଧ୍ୟରେ ଏକା ଅଭିଳାଷ ଜନ୍ମିଛି । ବର୍ତ୍ତମାନ ପ୍ରଶ୍ନ ଉଠୁଛି ଦୁଧରେ ଚିନି ପଡ଼ିବା ଉଚିତ କି ଚିନିରେ ଦୁଧ ପଡ଼ିବା ଉଚିତ । ଏକ୍ସଟେନସନ ସର୍ଭିସ ଓ ସର୍ବୋଦୟ ମଧ୍ୟରେ ମୂଳତଃ ପ୍ରଭେଦ ରହିବା ଉଚିତ ନୁହେଁ । କିନ୍ତୁ ଯେଉଁ ପାର୍ଥକ୍ୟ ଦେଖାଯାଉଛି, ତାହା ହେଉଛି ସର୍ବୋଦୟ ପ୍ରେମ ଓ କରୁଣା ଉପରେ ପ୍ରତିଷ୍ଠିତ । ସେ ତଳଆଡ଼ୁ ଘର ତିଆରି କରୁଛି । ଏ ଏକ୍ସଟେନସନ ସର୍ଭିସ୍ ଆଉ ଉପରୁ ଗଢ଼ା ହୋଇଛି । ସେ ଉପରୁ ତଳଆଡ଼କୁ ଆସିବାକୁ ଚାହୁଁଛି । ଏକ୍ସଟେନସନ ସର୍ଭିସ୍‌ର ଆଧାର ମଧ୍ୟ ଜନତା, ମାତ୍ର ତାହା ସରକାରଙ୍କ ଇଚ୍ଛାରେ; କିନ୍ତୁ ପ୍ରେମ ଓ କରୁଣା ଉପରେ ତାହା ପ୍ରତିଷ୍ଠିତ ନୁହେଁ । ତେଣୁ କାର୍ଯ୍ୟର ଆଧାର କ'ଣ ହେବା ଉଚିତ ତାହା ବୁଝିବା ଦରକାର ।

ପ୍ରକୃତରେ ଆଜିର ଯୋଜନା

ଶୋଷଣକୁ ସାହାଯ୍ୟ କରୁଛି —

ପାଞ୍ଚ ଛଅବର୍ଷ ପୂର୍ବେ ମୁଁ ତାମିଲନାଡ଼ୁରେ ବୁଲୁଥିଲି । ସେଠାରେ ଭଲ ଭଲ ଗ୍ରାମଦାନ ମିଳିଛି । କେନ୍ଦ୍ର ସରକାରଙ୍କ କମ୍ୟୁନିଟି ପ୍ରୋଜେକ୍ଟର ମନ୍ତ୍ରୀ ଗ୍ରାମଦାନୀ ଗାଁ ଦେଖିବାକୁ ସେଠାକୁ ଯାଇଥିଲେ । ସେ ଗାଁ ଦେଖି ସେ ଖୁବ ଖୁସିହେଲେ । ତା ଉତ୍ତାରୁ ପୁଣି ଯେତେବେଳେ ମୋତେ ଭେଟିଲେ ସେତେବେଳେ କହିଲେ —"ଆମେ କମ୍ୟୁନିଟି ପ୍ରୋଜେକ୍ଟ କହି ଲାଗିଛୁ ସତ୍ୟ, ମାତ୍ର ଗାଁରେ ତ କମ୍ୟୁନିଟି ନାହିଁ ପ୍ରୋଜେକ୍ଟ ଆସିବ କୁଆଡ଼ୁ ? ମୁଁ ଗ୍ରାମଦାନୀ ଗାଁ ଦେଖିଲାରୁ ଜାଣିଲି ଯେ ସେଠାରେ କମ୍ୟୁନିଟି ଗଢ଼ି ଉଠିଛି । ସେଠାରେ କମ୍ୟୁନିଟି ପ୍ରୋଜେକ୍ଟ ଛିଡି ପାରିବ ।" ତାଙ୍କର ଏହି ଅଭିମତଟି ପ୍ରଣିଧାନ ଯୋଗ୍ୟ । ସେ କହିଲେ—ଆମେ କେତେ ବର୍ଷ ହେଲା ଗରିବଙ୍କୁ ସାହାଯ୍ୟ ଦେବାକୁ ଚାହୁଁଛୁ; କିନ୍ତୁ ଆମ

ସାହାଯ୍ୟ ଗରିବଙ୍କ ପାଖ ପହଞ୍ଚ ପାରୁନାହିଁ । ଯେଉଁମାନେ ନିଜ ବଳରେ ସେ ସାହାଯ୍ୟକୁ ଟାଣି ନେଇ ପାରୁଛନ୍ତି ସେହିମାନେ ସେ ସାହାଯ୍ୟ ପାଉଛନ୍ତି । ଗରିବଙ୍କଠାରେ ଏପରି ସାହାଯ୍ୟ ଟାଣି ନେବାକୁ ସାମର୍ଥ୍ୟ ନାହିଁ । ସେଥିପାଇଁ ଆମ ସାହାଯ୍ୟ ସେମାନଙ୍କ ନିକଟରେ ପହଞ୍ଚ ପାରୁନାହିଁ । ଏପରିସ୍ଥଳେ ଏ କମ୍ୟୁନିଟି ପ୍ରୋଜେକ୍ଟ ଓ ଏକ୍‌ସଟେନସନ ସର୍ଭିସ୍ ଉପର ସ୍ତରରେ ରହିଯାଉଛି । ଗାନ୍ଧୀଜୀଙ୍କୁ ଛୁଇଁ ପାରୁନାହିଁ । ଧରନ୍ତୁ ରାସ୍ତା ତିଆରି ହେଉଛି । ଏ ରାସ୍ତା ତିଆରି କାର୍ଯ୍ୟସୂଚୀ ତ ଇଂରେଜମାନଙ୍କର ଥିଲା । ଗାଁମାନଙ୍କରେ ଯେଉଁ କଞ୍ଚାମାଲ ରହିଛି ତାହାର ରପ୍ତାନିର ସୁବିଧା ପାଇଁ ଏ ରାସ୍ତା ଘାଟ ହେଉଛି ବୋଲି ସେମାନେ କହୁଥିଲେ । ମାନ ଗାଁର କଞ୍ଚାମାଲ କିପରି ସହରକୁ, ଇଂଲଣ୍ଡକୁ ଯାଇପାରିବ ଏହାହିଁ ଥିଲା ସେମାନଙ୍କର ଉଦ୍ଦେଶ୍ୟ । ତେଣୁ ଯାତାୟତର ସୁବିଧା ପାଇଁ ସଡ଼କ ତିଆରି କରୁଥିଲେ । ସେଥିପାଇଁ ସରକାର ଯେ ସଡ଼କ ତିଆରି କରୁଛନ୍ତି ତଦ୍ୱାରା ସେ ଆମ ଗାଁଗୁଡ଼ିକୁ ଶୋଷଣ ମଧ୍ୟ କରିପାରିବେ । ଏଇଟା ମୋ ଭାଷାରେ ମୁଁ କହୁଛି । ସେମାନଙ୍କ ଭାଷା ହେଉଛି ଗାଁଲୋକଙ୍କୁ ସାହାଯ୍ୟ । କିନ୍ତୁ ଗାଁର କଞ୍ଚାମାଲ କିପରି ଗାଁରେ ପକ୍‌କା ମାଲରେ ପରିଣତ ହେବ ସେଭଳି ଯୋଜନା ସେ କରୁନାହାନ୍ତି ।

ଠାଏ ମୁଁ ଯୋଜନାରେ ପଢ଼ିଲି "ଆପଣଙ୍କ କୃଷୀ ଭିକ୍ଷା ଉଠିଲୁ ।" ମୁଁ ଭାବିଲି—କୃଷୀ ତ ଉଠିଲୁ, ଆମେ ବୁଦ୍ଧିମନ୍ତମାନେ ତ ବଳ ମାଉଁନାହୁଁ । ତା'ହେଲେ ଏ ଦେଶର ଦଶା କ'ଣ ହେବ । ଏ କୃଷୀ କିପରି ଉଠିଲୁ ସେ କଥା ଯୋଜନାରେ ବୁଝେଇ ଦିଆ-ହୋଇଛି । ଧାନ, ବରି, ଗହମ ଆଦି ଖାଦ୍ୟଶସ୍ୟର ଭାଉ କିପରି ବେଶୀ ହେବ ସେ ବାଗ କୃଷୀଏ ଜାଣନ୍ତି ନାହିଁ । ସେମାନେ ଯଦି

ଧାନ, ବିରି, ଗହମ ଆଦି ଶସ୍ୟକୁ ବାଛି ପକାନ୍ତେ ଅର୍ଥାତ୍ ଭଲ ପୁଷ୍ଟ ଫସଲ ଓ ଅଗାଡ଼ିଆ ଫସଲ ବାଛି ଭଲ ଫସଲକୁ ବିକିଲେ ବେଶୀ ଲାଭ ମିଳନ୍ତା, ଏ ପ୍ରସ୍ତାବକୁ ମୋର ହାତଯୋଡ଼ି ନମସ୍କାର । ସେ ଏ ବୁଦ୍ଧି କୃଷୀଙ୍କୁ ଶିଖାନ୍ତୁ ନାହିଁ । ଏବେ ଯାହା ଫସଲ ହେଉଛି ତାକୁହିଁ ବିକି କୃଷୀ ଚଳୁଛି । ଯଦି ଏଣିକି ଏ ବଛୁବଛୁ ଚାଲିବ ତେବେ ସେ ଭଲକୁ ବିକି ଖରାପକୁ ଖାଇବ । ତା ପେଟକୁ ଯିବ ନୀରସ ଖାଦ୍ୟ ଓ ଅଣ୍ଡାକୁ ଯିବ ପଇସା । ଏଥିରେ କି ଲାଭ ? ବର୍ତ୍ତମାନ ତ କିଛି ହେଲେ ଭଲ ଫସଲ ତା ପେଟକୁ ଯାଉଛି !

ଗରୀବଙ୍କ ପାଇଁ କରୁଣା ଲୋଡ଼ା—

ଜେଲ୍ କଥା । ଜେଲ୍ ବଗିଚରେ ପନିପରିବା ହୁଏ । ସେ ପନିପରିବା ଆଗ ଜେଲ୍ କଇଦୀମାନେ ଖାଇବା କଥା । ମାତ୍ର ତାହା ବଛୁବଛୁ ହୁଏ । ଭଲ ପରିବା ତ ବଜାରକୁ ବିକିହେବାକୁ ଯାଏ । ସେ ପରିବାର ଦାମ ବେଶୀ । ସେଠା ଜେଲ୍‌ର ଆୟ । ବାକି ବାଜେ ପରିବା ଡଙ୍କ ଖଡ଼ାଡଙ୍କ ଜେଲ୍ କଇଦୀଙ୍କୁ ମିଳେ । ସେ ପରିବା ବି ଓଜନ ହୁଏ, ତାର ମୂଲ୍ୟ ହିସାବ ହୁଏ । ବଜାରରେ ବିକା ଯାଉଥିବା ପରିବା ସେର ବାରଣା, ଏଣେ ଏ ଖଡ଼ା ସେର ମଧ୍ୟ ବାରଣା । ଏହାଦ୍ୱାରା ଜେଲ୍‌ର କୃଷିବିଭାଗ ସ୍ୱାବଲମ୍ବୀ ହୋଇଯାଏ । ଆମେ ଜେଲରେ ଥିବାବେଳେ ପରିବା ପାଇଁ ଆପତ୍ତି ଅଭିଯୋଗ ହେଉଥିଲା । ସେଠା ସୁପରିଣ୍ଟେଣ୍ଡେଣ୍ଟ ବଡ଼ ବିଦ୍ୱାନ୍ । ଆହାର ଶାସ୍ତ୍ର ଓ ଆରୋଗ୍ୟ ଶାସ୍ତ୍ରରେ ପ୍ରକାଶ । ସେ ଆମକୁ ବୁଝାଇ ଦେଲେ ଯେ ଖଡ଼ାରେ ହିଁ ଭିଟାମିନ୍ ବେଶୀ । ତହିଁରେ ମୂଲ୍ୟବାନ୍ ତତ୍ତ୍ୱ ଅଛି । ସହର ଲୋକେ ଓଲୁ, ସେମାନେ ଏହା ଜାଣନ୍ତି ନାହିଁ । ସେଥିପାଇଁ ଆପଣମାନଙ୍କୁ ଏଠାରେ ଏହା ଖୁଆଉଛୁ ।

ଏହାକୁ ଖାଇଲେ ପେଟ ସଫା ହୁଏ । ମୁଁ ତାଙ୍କୁ ପଚାରିଲି— ଆପଣଙ୍କ ଘରେ ମଧ୍ୟ ଖଡ଼ା ଖୋଉଥିବେ ? ଏହା ଶୁଣି ସେ ହସିଲେ । କ'ଣ ଏବେ କହିବା !!

ଏହିପରି ଯେଉଁଠି ଗରିବ ଦୁଃଖୀଙ୍କ ପାଇଁ କରୁଣା ନାହିଁ ସେଠାରେ ଉପରୁ ଯେତେ ସାହାଯ୍ୟ ପହଞ୍ଚାଇଲେ ସୁଦ୍ଧା ତାହା ଗାଁର ଉପର ସ୍ତରରେ ଅଟକି ଯିବ । ଅତି ବେଶୀ ହେଲେ ଗାଁରେ ସ୍କୁଲ ବା ଡାକ୍ତରଖାନା ବସେଇବେ ବା ସଡ଼କ ତିଆରି କରିଦେବେ । ସଡ଼କ କରିଦେଲେ ଡାକ୍ତର ରୋଗୀଙ୍କ ପାଖରେ ପହଞ୍ଚି ପାରିବ କି ? ଡାକ୍ତର ଆସିଲେ ମଧ୍ୟ ଭୂତଦୟା କାର୍ଯ୍ୟ ହେବ କି ? ଡାକ୍ତର ଔଷଧ ଦେଇ ଗାଁର ସେବା କରିବ । ତାର ଫଳ ହେବ କ'ଣ ନା ମରିବା ଲୋକ ତ ନିଶ୍ଚିନ୍ତ ମରିବ, ତା ସଙ୍ଗେ ସଙ୍ଗେ ତା ପଇସା ଟଙ୍କା ହରଣଚାଲ ହୋଇଯିବ । ଆମ ଦେଶରେ କଥା ଅଛି—

"ବୈଦ୍ୟରାଜ ନମସ୍ତୁଭ୍ୟଂ ଯମରାଜ ସହୋଦର<br>ଯମସ୍ତୁ ହରସ୍ତୁ ପ୍ରାଣଂ ବୈଦ୍ୟଃ ପ୍ରାଣାନ୍ ଧନାନି ଚ"

(ହେ ବୈଦ୍ୟରାଜ ! ଆପଣଙ୍କୁ ନମସ୍କାର । ଆପଣ ଯମରାଜଙ୍କର ସହୋଦର ଭାଇ, ଯମ ପ୍ରାଣ ନିଏ ମାତ୍ର ଡାକ୍ତର ପ୍ରାଣ ଓ ଧନ ଉଭୟଙ୍କୁ ନିଏ) ଆଉ କ'ଣ ବା କହିବା ? ଏ ବୁଦ୍ଧି ଭଲ ହସନ୍ତି। ଯେ ଗାଁରେ ଜଡ଼ିବୁଟିର ବଗିଚା କରନ୍ତେ, ନସିବ ଛଟକା ଚେରମୂଳ ଗାଁ ଲୋକଙ୍କୁ ଦିଅନ୍ତେ, ସେଥିରେ ଔଷଧ ତିଆରି କରନ୍ତେ ତେବେ ଅବା କିଛି ଲାଭ ମିଳନ୍ତା । ଏବେ ତ ଔଷଧ ମଧ୍ୟ ମିଶା ହେଲଣି । ଶ୍ରୀସୁଶୀଳା ନାୟ୍ୟର ଅନେକ ସ୍ଥାନରେ କହିଲେଣି ଯେ ଔଷଧରେ ଅନ୍ୟ ପଦାର୍ଥ ମିଶା ହେଉଥିବାରୁ ଔଷଧ ଭଲ ଫଳ ଦେଉ ନାହିଁ । ଗାଁରେ ସଡ଼କ ହେଲେ ଗୋଟାଏ ଲାଭ । ବୁଲିବାକୁ

ସୁବିଧା ହୁଏ । ମୋର ବି ତ ସଡ଼କ ହେଲେ ସୁବିଧା ନ ହେଲେ ବୁଝିବ କେମିତି ? କିନ୍ତୁ ସେ ସଡ଼କ ବି ଏକ ମୁହାଁ (one way traffic) ।

ମୁଁ ପଣ୍ଡିଚେରୀରେ ଯେଉଁଠି ଚାଷ କରୁଥିଲି ସେଠି କୂଅ ଖୋଳି କୂଅରୁ ପାଣି କାଢ଼ି ବିଲରେ ମଡ଼ଉଥିଲି । ଗୋଟାଏ ପାଣି ଟିଆର କରି ସେଇଥିରେ ପାଣି ଢ଼ାଳି ବିଲରେ ପାଣି ଦେଉଥିଲି । ପଚିଶ ବାଲଟି ପାଣି ଢ଼ାଳି ସାରିଲା ପରେ ବି ଦେଖିଲି ବିଲକୁ ପାଣି ଯାଉ ନାହିଁ । ଶହେ ବାଲଟି ଢ଼ାଳିଲେ ଯାଇ ପାଣି ବିଲକୁ ଛୁଇଁବ । ମୁଁ ତ ସ୍ୱୟଂ ଚାଷୀ ! କୌଣସି ଚାଷୀର ସାହାଯ୍ୟ ମୁଁ ନେଉ ନ ଥାଏ । ସ୍ୱାବଲମ୍ବୀ ହୋଇଥାଏ । କିନ୍ତୁ ସ୍ୱାବଲମ୍ବୀ ସାଙ୍ଗକୁ ମୋର ତ ପୁଣି ବୁଦ୍ଧି ଥିଲା । କେତେଦିନ ପରେ ଲକ୍ଷ୍ୟ କଲି ଯେ ଟିଆରଟା ଉଚ୍ଚ, ନାଳି ଟିକିଆ ହୋଇଛି । ସେଥିପାଇଁ ନାଳି ସବୁ ପାଣି ପିଇ ଯାଉଛି । ଏହିପରି ସରକାରଙ୍କ ତରଫରୁ ଯେଉଁ ସାହାଯ୍ୟ ଯାଉଛି ତାହା ଯେଉଁ ନାଲି ବା ନାଳରେ ଢଳା ହେଉଛି ତାହାଠାରୁ ସାହାଯ୍ୟ ପାଇବା ଲୋକଙ୍କ ସ୍ଥାନ ଉଚ୍ଚ । ନାଳବାଟେ ସାହାଯ୍ୟ ସେଠାରେ ପହଞ୍ଚି ପାରୁ ନାହିଁ । ଫଳରେ ନଳୀ ବେଶୀ ସାହାଯ୍ୟ ମାରି ନେଉଛି । ମୁଁ ତ କୌଣସି ପାର୍ଟିର ଲୋକ ନୁହେଁ । ସରକାରଙ୍କୁ ନିନ୍ଦା କରିବାର ମୋର କିଛି ଲାଭ ନାହିଁ । ମୋ ବିଚାରରେ ସରକାର ମଧ୍ୟ ଆମରି ଗୋଟିଏ ଅଙ୍ଗ । ଦେଶର ସମସ୍ତେ ତ ଆମରି ଲୋକ । ମାତ୍ର ପରିସ୍ଥିତି ଯାହା ହୋଇଛି ତାହାହିଁ କହିଲି । ଏହାର ମୂଳ କାରଣ ହେଉଛି ଆପଣମାନେ ଯେଉଁ ଗାଁର ସେବା କରିବେ ସେ ଗାଁରେ ଆପଣଙ୍କର କୌଣସି ଇଣ୍ଟରେଷ୍ଟ ନାହିଁ, ଏଣେ ନିଜ ଗାଁକୁ ଭଲକରି ଗଢ଼ିବା ଦିଗରେ ଗାଁ ଲୋକଙ୍କର ବି କୌଣସି ଇଣ୍ଟରେଷ୍ଟ ନାହିଁ । ପୁଣି ଗାଁରେ ଯେଉଁମାନେ ସବୁଠାରୁ ଦୁଃଖୀ ଅଛନ୍ତି ସେମାନଙ୍କୁ ଉପରକୁ ଉଠାଇବାକୁ ହେବ, ସେମାନଙ୍କ ଆଡ଼କୁ ଆଗ

ଦୃଷ୍ଟି ଦେବାକୁ ହେବ, ଏହାକୁ ପ୍ରଥମ ସ୍ଥାନ ଦିଆଯାଇ ନାହିଁ । ମନେ କରନ୍ତୁ ମୋ ଦେହରେ କ୍ଷତ ହୋଇଛି କିମ୍ବା କାନ ଫାଟୁଛି । ତା'ହେଲେ ମୋ ମନ ଯାଇ ସେହିଠାରେ ରହିବ । ତାକୁ ଭଲ କରିବା ହେବ ମୋର ପ୍ରଥମ କାମ । ସେହିପରି ଏକ୍ସଟେନସନ୍ ସର୍ଭିସ୍ ଆଦି ଯେଉଁ ସବୁ କାମ ଚାଲିଛି ତାହା ହେଉଛି ଦେହକୁ ହାର ପିନ୍ଧାଇବା କାମ, ତାହା ଦୁଃଖୀ ଅବୟବ ଆଡ଼କୁ ଦୃଷ୍ଟି ଦେବା କାମ ନୁହେଁ ।

ଉତ୍ପାଦନ ସାଙ୍ଗକୁ ସମବିତରଣ ଦରକାର—

ଏବେ କହୁଛନ୍ତି—ଉତ୍ପାଦନ ବଢ଼ାଅ । ଉତ୍ପାଦନ ବଢ଼େଇଲେ କ'ଣ ହେବ ? ତାର ବିତରଣ ଯେ ହେବା ଦରକାର ସେ କଥା ଆଡ଼କୁ ଦୃଷ୍ଟି ଦିଆ ହେଉନାହିଁ । ଏବେ ଶୁଣି କହିଲେଣି ବିତରଣ କରିବାକୁ ହେବ, ସୋଶାଲିଜ୍ମ ଆଣିବାକୁ ହେବ । ଏତକ ତ ବୁଝିବା ଦରକାର ଯେ ଏ କାମଟି ଚଞ୍ଚଳ ନ କଲେ ଲୋକେ ଶାନ୍ତ ହୋଇ ବସି ରହିବେ ନାହିଁ । ପଣ୍ଡିତ ନେହରୁ ମଧ୍ୟ ଏବେ ଏହି କଥା କହିଛନ୍ତି । ମୁଁ ତ ବାର ବର୍ଷ ହେଲା କହି ଲାଗିଛି ଯେ ବିତରଣ ହେବା ଦରକାର । କେବଳ ଉତ୍ପାଦନ ବଢ଼େଇଲେ କିଛି ହେବ ନାହିଁ । ଗରିବଙ୍କୁ ସାହାଯ୍ୟ ମିଳିବା ଦରକାର । କିନ୍ତୁ ବୁଦ୍ଧିମନ୍ତ ଲୋକେ ମୋତେ କହୁଥିଲେ—ତାହା କଲେ ଦାରିଦ୍ର୍ୟ ବଣ୍ଟନ (Distribution of poverty) ହେବ । ସେଥିପାଇଁ ଆଗ ଉତ୍ପାଦନ ବଢ଼ାଇ ତା ପରେ ବିତରଣ କଥା ପଡ଼ିବ । ବର୍ତ୍ତମାନ ବିତରଣ କଥା ପଡ଼ି ପାରିବ ନାହିଁ । ସୋଶାଲିଜ୍ମର ଅର୍ଥ ହେଲା ସମ୍ପତ୍ତି ବଣ୍ଟନ—ଦାରିଦ୍ର୍ୟ ବଣ୍ଟନ ନୁହେଁ । ସମ୍ପତ୍ତି ହେଲେ ତାହା ବଣ୍ଟାହେବ । ମୁଁ ତାଙ୍କୁ ବାରବର୍ଷ ହେଲା ଏହି ଜବାବ ଦେଇ ଆସୁଛି ଯେ ଯଦି ଆପଣଙ୍କ ଘରେ ପାଞ୍ଚ ପ୍ରାଣୀ କୁଟୁମ୍ବ ଅଛନ୍ତି ଅଥଚ ସୁଦ୍ଧା ଗୋଟିଏ ଜଣଙ୍କ ପାଇଁ ଖାଦ୍ୟ ଅଛି ତେବେ ଆପଣ କ'ଣ କରିବେ ? ତାକୁ ପାଞ୍ଚ ଭାଗ କରି ଟିକିଏ ଅଳ୍ପ ଅଳ୍ପ ଖାଇ ସମସ୍ତେ

ମିଶି ଉତ୍ପାଦନ ବଢ଼ାଇବେ ନା ଜଣକୁ ଉପାସ ରଖି ଦୁଇଜଣ ସେଠିକ ଖାଇ ଦେଇ ପାଞ୍ଚଜଣ ମିଶି ଉତ୍ପାଦନ ବଢ଼ାଇ ତାପରେ ତିନି ଲୋକଙ୍କୁ ଖାଇବାକୁ ଦେବେ ? ଘରେ ଯାହା କରନ୍ତେ ଦେଶରେ ମଧ୍ୟ ତାହାହିଁ କରନ୍ତୁ । ଠିକ୍‌ଏ ବୁଝିବା ଦରକାର ଯେ ଉତ୍ପାଦନ ଓ ବିତରଣ ଉଭୟ କାର୍ଯ୍ୟ ଏକା ସାଙ୍ଗରେ ହେବା ଉଚିତ । ଆଗ ଉତ୍ପାଦନ ପରେ ବିତରଣ ହୋଇ ନ ପାରେ । ଏ କଥାଟି ବର୍ତ୍ତମାନ ବୁଝିଲେଣି, ତେଣୁ ମୋର ଆଶା ସେହି ଦୃଷ୍ଟିରୁ କିଛି କାମ ହେବ ।

ପଞ୍ଚାୟତକୁ ରାଜନୀତିରୁ ମୁକ୍ତ କର—

ପଞ୍ଚାୟତର ଉଦ୍ଦେଶ୍ୟ ଭଲ । କିନ୍ତୁ ତାର ସ୍ୱରୂପଟି କ'ଣ ? ଏଠି ମୁଁ ଶୁଣିଲି ଓଡ଼ିଶାରେ ପାଞ୍ଚହଜାର ଲୋକରେ ଗୋଟିଏ ଲେଖାଁ ପଞ୍ଚାୟତ ଅଛି । କୋଉଠି କେମିତି ଦଶହଜାର ଲୋକରେ ପଞ୍ଚାୟତ ମଧ୍ୟ ଅଛି । ସାଧାରଣତଃ ଗାଁରେ ହାରାହାରି ଦୁଇଶହ ଲୋକ ଥାନ୍ତି । ଆହୁରି ଛୋଟ ଗାଁ ମଧ୍ୟ ଥାଏ । ତା'ହେଲେ ପାଞ୍ଚ ହଜାର ଜନସଂଖ୍ୟା ବିଶିଷ୍ଟ ପଞ୍ଚାୟତରେ ପନ୍ଦର ଷୋଳଟି ଠାରୁ ଆରମ୍ଭ କରି ପଚିଶଖଣ୍ଡ ଯାଏ ଗାଁ ଥିବ ଏବଂ ଏହାର କ୍ଷେତ୍ର ପାଞ୍ଚ ସାତ ମାଇଲ ବ୍ୟାପୀ ହୋଇଥିବ । ଏତେ ବଡ଼ ପଞ୍ଚାୟତରେ ସବୁଆଡ଼େ କପରି ଦୃଷ୍ଟି ଦେଇ ହେବ ? ପ୍ରତ୍ୟେକ ଗାଁରୁ ପ୍ରତିନିଧି ବାଛି ହୋଇ ପଞ୍ଚାୟତକୁ ଆସିବେ । ତହିଁରେ ପୁଣି ଯାହାଙ୍କର ପଇସା ବେଶୀ, ଯେ ବେଶୀ ଜମିର ମାଲିକ, ସରକାରୀ ସ୍ତରରେ ଯାହାଙ୍କ ଓଜନ ବେଶୀ, ସେହିମାନେ ନିର୍ବାଚିତ ହୋଇ ଆସିବେ । ସେମାନେ ଗାଁର ପ୍ରତିନିଧିତ୍ୱ କେତେଦୂର କରି ପାରିବେ ? ମାସରେ ଥରେ ଖଣ୍ଡେ ପଞ୍ଚାୟତ ସଭା ହେବ; ସେଥିରେ ଏ ଗାଁ ଲୋକ ଏପଟେ ଭିଡ଼ିଲେ ସେ ଗାଁବାଲା ସେପଟେ ଭିଡ଼ିବେ । ଏହିପରି ଟଣା ଓଟରା, କଳି କଜିଆ ଲାଗି ରହିବ । ତାହାରି ଭିତରେ ଯାହା କାମ ହୋଇ

ପାରିବ,ହେବ । ଏହାଦ୍ୱାରା କି ଗ୍ରାମସ୍ୱରାଜ୍ୟ ହେବ ? ଆଉରି ଗୋଟିଏ ମଜାର କଥା ମୁଁ ଶୁଣିଛି । ଗ୍ରାମପଞ୍ଚାୟତରେ କିଛି ଆୟ ରହିବା ଦରକାର । ସେଥିପାଇଁ ସରକାର ଗ୍ରାମବାସୀଙ୍କୁ କିଛି ଧାନ ଦିଅନ୍ତି । ସେ ଧାନ ପଞ୍ଚାୟତ ଗ୍ରାମବାସୀଙ୍କୁ ଦେବ ଏବଂ ବଜାରରେ ଧାନ ଦର ଦଶଟଙ୍କା ହୋଇଥିଲେ ପଞ୍ଚାୟତ ଗୃହୀତଲୋକଙ୍କୁ ସେ ଧାନ ବାରଟଙ୍କା ଦରରେ ଦେଇ ପାରିବ । ଏ ଲାଭ ଟଙ୍କା ଦୁଇଟା ପଞ୍ଚାୟତର । ଏଇଟା ତାର ଆୟ । ଏଥିରେ କେଉଁ ସୌହାର୍ଦ୍ଦ୍ୟଟା ରହିଲା ? ଗାଁଲୋକେ ଭାବିବେ ଏ ପଞ୍ଚାୟତ ମହାଶୟ ନ ଥିଲେ ଆମକୁ ଦଶଟଙ୍କା ଦରରେ ଧାନ ମିଳିଥାନ୍ତା । ଏମାନେ ମଝିରୁ ଦୁଇଟଙ୍କା ମାରିନେଲେ । ବର୍ତ୍ତମାନ ଏ ବାଟରେ ଦୁଇଟଙ୍କା ଗଲା । ଲୋକଙ୍କ ପାଖରେ ଶସ୍ତାଦରରେ ଧାନ ପହଞ୍ଚୁଥିବା ସ୍ଥଳେ ଯେଉଁଠି ପଞ୍ଚାୟତଗୁଡ଼ିକ ତାହା ମହଙ୍ଗା କରି ଦେଉଛନ୍ତି ସେଠାରେ ପଞ୍ଚାୟତ ପ୍ରତି ଆଦର ଭାବ ଆସିବ କିଆଁଉ ? ଏହାର ଅର୍ଥ ହେଉଛି ଏ ବ୍ୟବସ୍ଥା ଲୋକଙ୍କ ଉପରେ ଲଦି ଦିଆଯାଉଛି । ଲୋକଙ୍କ ଆଡ଼ୁ ଏ ବ୍ୟବସ୍ଥା ସୃଷ୍ଟି ହୋଇନାହିଁ । ଗଣତନ୍ତ୍ରର ମତ ଅନୁସାରେ ପଞ୍ଚାୟତକୁ ବଡ଼ କରି ଥୁଆହେଲା; କିନ୍ତୁ ପ୍ରତ୍ୟକ୍ଷ ଲୋକଶକ୍ତି ବଢ଼ାଇବାର ଶକ୍ତି ତାର ନାହିଁ ।

ବର୍ତ୍ତମାନ ଆଉ ଗୋଟିଏ ରହସ୍ୟ କହିବି । ପଞ୍ଚାୟତରେ ଯଦି ରାଜନୈତିକ ଦଳ ପଶିଲେ ତେବେ ତ ସର୍ବନାଶ । କେହି ଯଦି ନିଜର କାମକୁ ନଷ୍ଟଭ୍ରଷ୍ଟ କରିବାକୁ ଚାହୁଁଥିବେ,ତେବେ ପଲିଟିକାଲ ପାର୍ଟିମାନଙ୍କୁ ସେଥିରେ ପୂରାଇ ଦେଲେ ତାହା ହୋଇଯିବ । ସବୁ ନଷ୍ଟ କରିଦେବା ଦିଗରେ ଏ ପାର୍ଟି ଗୋଟିଏ ଉତ୍ତମ ଶକ୍ତି । ଆଗ ତ ଜାତିଭେଦକୁ ମୂଳକରି ସଦସ୍ୟ ବଛା ହୁଅନ୍ତି; ସେଥିରେ ପୁଣି

ରାଜନୈତିକ ଦଳ ଉଠିଲେ ସବୁ ଶେଷ । କ୍ଷମତାର ଅଧିକାର ଲାଭ କରିବା ପାଇଁ ଏ ପାଗଳାମି । କ୍ଷମତା ଦଖଲ ପାଇଁ ଲଢ଼ାଇ ଦେଶର ବଳକୁ ଖାଇ ଯାଉଛି । power (କ୍ଷମତା) ଓ Strength (ଶକ୍ତି) ମଧ୍ୟରେ ବିରୋଧ ରହିଛି । କ୍ଷମତା ଶକ୍ତିକୁ ନଷ୍ଟ କରି ଦେଉଛି । ଏହାର ପ୍ରତିକାର କ'ଣ ସେ କଥା ଆମେ ପ୍ରତିପାଦନ କରୁଛୁ । ଛୋଟିଆ ଛୋଟିଆ ଗାଁ ଗୁଡ଼ିକର ଯୋଜନା ଗାଁରେ ତିଆରି ହେବା ଉଚିତ ଏବଂ ପରସ୍ପର ପ୍ରୀତିର ମୂଳଦୁଆ ଉପରେ ଗାଁ ସଭା ଗଢ଼ା ହେବା ଉଚିତ । ଗାଁର ପ୍ରତିପଦରୁ ଜଣିଏ ଲେଖାଁକୁ ନେଇ ଗ୍ରାମସଭା ଗଢ଼ା ହେବ । ଗାଁର ଭୂମିହୀନଙ୍କୁ ଜମି ଦିଆଯିବ । ସମସ୍ତେ ମିଳିମିଶି କାମ କରିବେ । ଗାଁ ସଭାରେ ସଭ୍ୟ ନିର୍ବାଚନ କଥା ରହିବ ନାହିଁ । ଘର କାମ ଚଳାଇବା ପାଇଁ ଆମେ କ'ଣ ଭୋଟଦେଇ ଲୋକ ବାଛୁ ? ଘରେ କିଛି ପର୍ବ ପର୍ବାଣୀ ବା ବ୍ରତ ଘର ଥିଲେ ଆମେ କଣ ଇଲେକ୍‌ସନ୍ କରି କାମର ଦାୟିତ୍ୱ ଦେଉ ? ସେ କ୍ଷେତ୍ରରେ ଘରର ପ୍ରତ୍ୟେକ ଲୋକ ନିଜର ସାଧ୍ୟ ଅନୁସାରେ କାମ କରି ଯାଆନ୍ତି । ଗାଁରେ ସେହି ପରି ପ୍ରତିପଦରୁ ଜଣେ ଲେଖା ସଦସ୍ୟ ନେଇ ଗ୍ରାମସଭା ଗଢ଼ା ହେବ ଓ ଏ ଗାଁ ସଭା ସର୍ବାନୁମତିରେ ଗାଁ ବିଷୟରେ ବିଚାର କରିବେ । ଛୋଟ ଛୋଟ କଥା ହୋଇଥିଲେ ଶତକଡ଼ା ନବେ ଲୋକଙ୍କ ସମ୍ମତିରେ କାମ ହେବ । ଗୁରୁତ୍ୱପୂର୍ଣ୍ଣ ବିଷୟ ହୋଇଥିଲେ ସର୍ବାନୁମତି ଆବଶ୍ୟକ ହେବ । ପ୍ରତ୍ୟେକ ପରିବାର ନିଜ ଫସଲ ବା ଆୟର ଗୋଟାଏ ଅଂଶ ଗ୍ରାମସଭାକୁ ଦାନ କରିବ । ତାହାହିଁ ଗ୍ରାମପାଣ୍ଠି ହେବ । ତାରି ବଳରେ ଗାଁର କାମ ଚାଲିବ । ପୁଣି ଉପରୁ ସରକାର ମଧ୍ୟ ସିଧା ଗ୍ରାମସଭାକୁ ସାହାଯ୍ୟ ଦେବେ । ଏହାହିଁ ସର୍ବୋଦୟୀ ଯୋଜନା । ପ୍ରେମ ଓ କରୁଣାର ମୂଳଦୁଆ ଉପରେ ଏ କାମ ହେବ । ଗୋଟିଏ କଥା

ପ୍ରତି ସର୍ବଦା ନଜର ଦେବାକୁ ହେବ ଯେ ଗାଁ ଯେପରି ଦୁଇଭାଗ ହୋଇ ନ ଯିବ ।

## ମିଳିତ ଉଦ୍ୟମରେ ପଞ୍ଚାୟତ ବଳଶାଳୀ ହେବ—

ବର୍ତ୍ତମାନ ପଞ୍ଚାୟତ ହାତରେ ସବୁ କ୍ଷମତା ନାହିଁ । କାରଣ ଗାଁର ପ୍ରତ୍ୟେକ ଘର ସାଙ୍ଗରେ ପଞ୍ଚାୟତର ସମ୍ପର୍କ ନାହିଁ । ଗାଁରେ ସାମୂହିକ ଉଦ୍ୟମ ହେଲେ ପ୍ରତ୍ୟେକ ଗାଁ ଓ ପ୍ରତ୍ୟେକ ବ୍ୟକ୍ତି ମାନଙ୍କର ସ୍ୱାତନ୍ତ୍ର୍ୟ ରକ୍ଷାକରି ମିଳିମିଶି କାମ କରିବା ଅଭ୍ୟାସ ବଢ଼ିବ । ଗରିବଙ୍କୁ କାମ ଯୋଗାଇବା ଦାୟିତ୍ୱ ଗ୍ରାମସଭା ବହନ କରିବ । ସେଥିପାଇଁ ସରକାରୀ ସାହାଯ୍ୟ ମିଳିଲେ ଆହୁରି ଭଲ ।

ବର୍ତ୍ତମାନ ଆପଣମାନେ ବିଚାରନ୍ତୁ ମୁଁ ଆପଣଙ୍କୁ ସାହାଯ୍ୟ ମାଗିବାକୁ ହକଦାର ନା ଆପଣ ଅଧିକାରୀ । ଆପଣମାନେ ତ ହଜାର ହଜାର କର୍ମୀରୂପୀ ଅଛନ୍ତି, ଆପଣମାନେ ଯଦି ଏ ଦୃଷ୍ଟିରେ ବିଚାର କରିବେ, ତେବେ ମୁଁ କାହିଁକି ଗ୍ରାମଦାନ ଆନ୍ଦୋଳନ ଚଳାଇବି ? ଆପଣମାନଙ୍କୁ ହିଁ ଏହା କରିବାକୁ ହେବ । ଗୋଟିଏ ଗୋଟିଏ ଗ୍ରାମଦାନୀ ଗାଁ ସ୍ୱାବଲମ୍ବୀ ଗାଁ ହେବେ । ସେ ଗ୍ରାମସଭାକୁ ପଞ୍ଚାୟତର ଅଧିକାର ମିଳିବ । ଏ ପ୍ରକାର ଦଶପନ୍ଦର ଖଣ୍ଡ ଗାଁ ମିଶି ଯେଉଁ ପଞ୍ଚାୟତ ହେବ ତାହା କୋଅର୍ଡ଼ିନେଟିଙ୍ଗ୍ ହେବ । କିନ୍ତୁ ଗାଁର ସମୁଦାୟ କାମ ଗ୍ରାମସଭା ତୁଲାଇବ । ଆସାମରେ ଗ୍ରାମଦାନ ଆଇନ୍ ହୋଇଗଲାଣି । ସେଠାରେ ଶହେ ଲୋକସଂଖ୍ୟା ବିଶିଷ୍ଟ ଗ୍ରାମଦାନୀ ଗାଁର ଗ୍ରାମସଭାକୁ ମଧ୍ୟ ପଞ୍ଚାୟତର ସବୁ ଅଧିକାର ମିଳିବ । ପୁଣି ଜିଲ୍ଲା ସ୍ତରରେ ଗୋଟାଏ ପଞ୍ଚାୟତ ହେବ ।

କିନ୍ତୁ ଛୋଟିଆ ଗାଁଗୁଡ଼ିକର ମଧ୍ୟ ସରକାର ସହିତ ସିଧା ସଳଖ ସମ୍ପର୍କ ରହିବ ଏବଂ ଲୋକେ ନିଜ ନିଜ ଗାଁର ଯୋଜନା ନିଜ ବୁଦ୍ଧି ଖଟେଇ କରିବେ । ଆମେ ଏଥିପାଇଁ ଆପଣଙ୍କ ସହଯୋଗ ଲୋଡ଼ୁଛୁ ଓ ଆପଣଙ୍କ ସହିତ ସହଯୋଗ କରିବାକୁ ଉତ୍ସୁକ ହୋଇ ରହିଛୁ । ଆମର ସହଯୋଗ ହେଉଛି ଆମେ ବାଟ୍ଟର ବୁଝାଇବୁ । ଆପଣ ଏଥିପାଇଁ ଶିବିର ଚଳାଇଲେ ସର୍ବସେବା ସଂଘ ଆପଣଙ୍କୁ ପୂରାପୂରି ସାହାଯ୍ୟ କରିବ । ସାହିତ୍ୟ ମଧ୍ୟ ଯୋଗେଇ ଦେବ । ମାନେ ଗ୍ରାମଦାନ କରିବା, ଜମି ବାଣ୍ଟିବା, ଗ୍ରାମସଭା ଗଢ଼ିବା ଆପଣଙ୍କର କାମ ହେବ ।

( ବଲାଙ୍ଗୀର ଜିଲାର ଜିଲାପରିଷଦ, ପଞ୍ଚାୟତ ସମିତିର ସଦସ୍ୟମାନଙ୍କୁ ପ୍ରଦତ୍ତ ଭାଷଣ, ବଲାଙ୍ଗୀର, ତା ୨୦।୧୧।୭୩ )

---

## "ନାନାଧର୍ମାଣାଂ ପୃଥ୍ୱୀଂ ବିବାଚସମ"

ବନ୍ଦେ ମାତରମ୍ ଓ ଜୟଜଗତ୍—

ଏଠାକୁ ଆସିବାବେଳେ ପ୍ରବେଶ ଦ୍ୱାରରେ ପଢ଼ିଲି "ଜୟ ଜଗତ୍" । ମୋତେ ଯଦି କେହି ପଚାରିବେ ଯେ ଭାରତବର୍ଷରେ କି କାମ ହେଲା ? ମୁଁ କହିବି କୋଟି କୋଟି କଣ୍ଠରୁ ଜୟଜଗତ୍ ଧ୍ୱନିତ ହେଲା । ଆମେ ଜାଣୁ ଯେ ଆମ ଏ ଦେଶରୁ ବନ୍ଦେମାତରଂ ମନ୍ତ୍ର ବାହାରିଲା । ଏ ବନ୍ଦେମାତରଂ ଏକ ବ୍ୟାପକ ମନ୍ତ୍ର । ଘରୁ ମା ଠାଖରୁ ଆରମ୍ଭ କରି ପରମାତ୍ମା ବିଶ୍ୱାତ୍ମା ଯାଏ ଏହା ବ୍ୟାପ୍ତ । କିନ୍ତୁ ପ୍ରଥମେ ଏହାର ଅର୍ଥ କ'ଣ ଥିଲା ? ବନ୍ଦେମାତରଂ କୋଇଲେ ବଙ୍ଗଳାକୁ ନମସ୍କାର । ସପ୍ତକୋଟି କଣ୍ଠ ବୋଇଲେ ଭାରତ ନୁହେଁ । ପୁଣି ସେ ମନୋଭାବର ବିକାଶ ହେଲାରୁ ସପ୍ତକୋଟି କଣ୍ଠ ତିଂଶ କୋଟି କଣ୍ଠ ହୋଇଗଲା । ମୂଳରୁ ସ୍ଥାନୀୟ ପ୍ରେମ ହେତୁ ଏହାର ସୃଷ୍ଟି ହେଲା । ତାପରେ ତାହା ବନ୍ଦେମାତରମ୍ ଭାରତମ୍ ଯାଏ ବ୍ୟାପିଗଲା ଏ ମନ୍ତ୍ର ଏପରି ପ୍ରାଣବାନ୍ ଯେ ଏହାକୁ ଆହୁରି ବ୍ୟାପକ କରି "ବନ୍ଦେମାତରମ୍ ପୃଥ୍ୱୀମ୍" ମଧ୍ୟ କହି ହେବ । ଆମ ମୁନିଋଷିମାନେ ଏଯା କହୁଥିଲେ । ବଡ଼ ଆଶ୍ଚର୍ଯ୍ୟ କଥା ଯେ ଯେଉଁ ଯୁଗରେ ରେଳ ମୋଟର ଆଦି ନଥିଲା, ପଦଯାତ୍ରା ଛଡ଼ା ଅନ୍ୟ ଉପାୟ ନଥିଲା, ସେ ପ୍ରାଚୀନ ଯୁଗର ଋଷିମାନେ ଭାଷାବାଦ, ପ୍ରାନ୍ତଦର୍ଶୀକତା ତ ଦୂରର କଥା ଭାରତମାତାଙ୍କ କଥା କହୁ ନ ଥିଲେ । ବେଦରେ ଗୋଟିଏ ସୁକ୍ତର ନାମ ପୃଥ୍ୱୀ ସୁକ୍ତ । "ନାନା ଧର୍ମାଣାଂ ପୃଥ୍ୱୀଂ ବିବାଚସମ"—ନାନା ଧର୍ମ ନାନା ଭାଷାରେ ପୂର୍ଣ୍ଣ ଏ ପୃଥିବୀକୁ

ଆମେ ବନ୍ଦନା କରୁଛୁ । ରହୁଥିଲେ ତ ଗଙ୍ଗା କୂଳରେ, ଏ ପୃଥିବୀ କେତେ ଲମ୍ବ, କେତେ ଓସାର ସେ କଥା ବି ସୁଦ୍ଧା ଜାଣି ନ ଥିଲେ, କିନ୍ତୁ ବନ୍ଦନା ଗାଇଛନ୍ତି ପୃଥିବୀର । କେତେ ବିଶାଳ, ବ୍ୟାପକ ପ୍ରାର୍ଥନା ।

ମଝିରେ ଆମେ ସଙ୍କୀର୍ଣ୍ଣମନା ହୋଇଗଲୁ । ପ୍ରାଦେଶିକତା-ବାଦରୁ ବାହାରି ପାରୁନାହୁଁ । ଏହା ଆଗରୁ 'ଜୟହିନ୍ଦ୍' କହୁଥିଲୁ । ଏବେ ନୂଆ ମନ୍ତ୍ର ଆସିଛି 'ଜୟଜଗତ୍' । ମୁଁ ପାକିସ୍ତାନ ଯାଇଥିଲି । ସେଠାରେ 'ଜୟଜଗତ୍' କହୁଥିଲି । ସେମାନେ କହୁଥାନ୍ତି ପାକିସ୍ତାନ ଜିନ୍ଦାବାଦ୍ । କିନ୍ତୁ ସେ ଜୟଘୋଷ ଅଳ୍ପଦିନ ଚଳିଲା । ସେମାନେ ଭାବିଲେ ଏ ଲୋକଟା ଆଗରେ ପାକିସ୍ତାନ ଜିନ୍ଦାବାଦ କହି କିଛି ଲାଭ ନାହିଁ । ତହୁଁ ସେମାନେ ବି ଜୟଜଗତ୍ କହିଲେ । ଏହାର ଅର୍ଥ ହେଲା "ଜୟଜଗତ୍" ପାକିସ୍ତାନରେ ବି ଚଳିବ । ଚୀନ୍ ଓ ଜାପାନ୍‌ରେ ବି ଚଳିବ । ବର୍ଲିନ୍‌ର ଏପଟ ସେପଟ ଦୁଇପଟେ ଚଳିବ । ଅର୍ଥାତ୍ ଏ ମନ୍ତ୍ରର ଯୋଡ଼ିବାଶକ୍ତି ଅଛି । ଏହିପରି ବିଶ୍ୱକୁ ଯୋଡ଼ିବା ମନ୍ତ୍ର ଭାରତର କୋଟି କୋଟି ମୁଖରୁ ବାହାରିଲା । ମୋ ବିଚାରରେ ଆମ ଭାରତବର୍ଷ ପଦଯାତ୍ରାର ଏ ଏକ ବହୁତ ବଡ଼ ଫଳ ।

ଏବେ ଡେଣେ ତ ଜୟଜଗତ୍—ଉଚ୍ଚ ବିଚାର । ଦେଖିଲା ବେଳକୁ ଦୂରକୁ ଚାହୁଁ; କିନ୍ତୁ ପାଦ ତ ନିକଟରେ ପଡ଼ିବ ? ସେଥିପାଇଁ କାମ କରିବାକୁ କ୍ଷେତ୍ର ଦରକାର । ସେ କ୍ଷେତ୍ର କେଉଁଠି ? ମୁଁ ଓ ମୋ ଘର, ଏତିକିରେ ଛନ୍ଦିହେଲା । ମଣିଷ ସବୁଠାରୁ ବେଶି ଆନନ୍ଦ ପାଏ ଘରୁ । ଆରେ ଭାଇ ! ମଣିଷ ଆସିବ ଯେଉଁଠୁ, ଯିବ ସେଇଠିକି । ଏ ଘରକୁ କିଏ ସାଥିରେ ନେଇଯିବ ?? କିନ୍ତୁ ଘର୍ ଘର୍ ଛୁଡ଼ ନାହିଁ । ମରାଠୀରେ କହନ୍ତି

"ଘର ଘର ଚଢ଼ଲଣି" ଅର୍ଥାତ୍ ମଲ୍ଲଟେଳଙ୍କୁ କଣ୍ଠରୁ ଘର ଘର ଶବ୍ଦ ବାହାରେ, ସେଥିମାନେ ବନ୍ଦନ୍ତି ବଣିଷ୍ଠବେଳଙ୍କୁ ବି ଘର ଭୁଲୁ ନାହାଁ, ଏତେ ଆସକ୍ତ ! ଏଣେ ମନ୍ତ୍ର ବୋଲୁ ହେଉଛୁ "ସର୍ବେ ସୁଖିନଃ ସନ୍ତୁ" ସମସ୍ତେ ସୁଖୀହେବା ଉଚିତ । ସମସ୍ତେ ସୁଖୀ ହୁଅନ୍ତୁ; କିଏ ଏହା ବାଞ୍ଛା ନ କରିବ ? ସ୍ୱେନ ବି କହିବ ଲୋକେ ଶ୍ରୀମନ୍ତ ହୁଅନ୍ତୁ, ତାହେଲେ ମୁଁ ଚୋରି କରିବି । ତେଣୁ ସମସ୍ତେ ସୁଖୀ ହୁଅନ୍ତୁ ବୋଲି କେବଳ ମନେ ମନେ ଇଚ୍ଛା କଲେ ଫଳ କିଛି ହୁଏ ନାହିଁ । ପ୍ରଶ୍ନ ହେଉଛି କିଏ ଆଗ ସୁଖୀ ହେବ ? ସେତେବେଳକୁ ସମସ୍ତେ କହିବେ "ଆତ୍ମ କୁଶଳେ ସର୍ବସିଦ୍ଧି" ଆଗ ମୁଁ ସୁଖୀ ହୁଏ, ତା'ପରେ ଅନ୍ୟମାନେ ସୁଖୀ ହେବେ । ତାହାହେଲେ 'ଜଗୃଜଗତ୍' ହୋଇପାରିବ ନାହିଁ । ସେ ମନ୍ତ୍ର ପବନରେ ଉଡ଼ିଯିବ । ତେଣୁ ଯଦି ଜଗୃଜଗତ୍ ଲୋଡ଼ା, ଅର୍ଥାତ୍ ଯଦି ବିଶ୍ବ କଳ୍ପନା ବିକଶିତ ହୋଇ ବିଶ୍ବକଳ୍ପନା ଆସିବା ଦରକାର, ତେବେ ଏଣେ ମଧ୍ୟ ଗୃହ କଳ୍ପନାର ବିକାଶ ହୋଇ ଗ୍ରାମକଳ୍ପନା ଆସିବା ଦରକାର । ଏ ତ ଅତି ସରଳ କଥା ।

ମାନଚିତ୍ର ଆଙ୍କିବାକୁ ସ୍କେଲ୍ ଥାଏ । ଏକ ମାଇଲ୍ ପାଇଁ ଇଞ୍ଚେ କିମ୍ବା ଶହେ ମାଇଲ୍ ପାଇଁ ଇଞ୍ଚେ । ଏ ପର୍ଯ୍ୟନ୍ତ ଭାରତ ଆମର ମାନଚିତ୍ର, ସେଥିରେ ମୋ ଘର ସ୍ଥାନ ପାଇଛି । ଏହା ଆଗରୁ ସମ୍ଭବତଃ ଭାରତର ମାନଚିତ୍ର ସ୍ଥାନରେ ଓଡ଼ିଶାର ମାନଚିତ୍ର ମୁଖ୍ୟ ରହିଥିଲା । ଆମେ ଆନ୍ଧ୍ର ମାତାଙ୍କ ଜୟ ଶୁଣିଥିଲୁ । ଏହିପରି କେତେ ଶ୍ରେଷ୍ଠ କନିଷ୍ଠ ମାତା ଥିଲେ । କିନ୍ତୁ ଏ ବିଜ୍ଞାନଯୁଗରେ ଏ ସାନ ସାନ ମା'ଙ୍କୁ ରଖିବା ଭାରି ବିପଜ୍ଜନକ । ପୁରୁଣା ଯୁଗଭଳି ଏ ଯୁଗ ହୋଇଥିଲେ ଚିନ୍ତା ନ ଥିଲା । କିନ୍ତୁ ବର୍ତ୍ତମାନ ବିଜ୍ଞାନ ଆଗେଇ ଚାଲିବା ଫଳରେ ସାରା ବିଶ୍ବ ପାଖେଇ ଆସିଲାଣି । ଏ କ୍ଷେତ୍ରରେ ଛୋଟିଆ ମା'ଆଚ୍ଛିଏ

ଗଡ଼ି ତାର ଜୟ ଜୟକାର କଲେ ଚଳିବ ନାହିଁ । ତଦ୍ୱାରା ଏ ପୃଥିବୀ ଧ୍ୱଂସ ହୋଇଯିବ । ସେଥିପାଇଁ ଠିକଏ ବସ୍ତୁତାନ୍ତ୍ରିକରେ ଚିନ୍ତା କରିବାକୁ ହେବ । ଏବେ ରାଷ୍ଟ୍ରପତି ରାଧାକୃଷ୍ଣନ୍ କହୁଛନ୍ତି "ବିଶ୍ୱଶାନ୍ତି ପାଇଁ ସବୁ ଦେଶକୁ ନିଜ ନିଜର ସ୍ୱାଧୀନତା ଟିକିଏ ଟିକିଏ ତ୍ୟାଗ କରିବାକୁ ପଡ଼ିବ । ତାହାହେଲେ ଯାଇ ବିଶ୍ୱଶାନ୍ତି ସମ୍ଭବ ହେବ ।" କୌଣସି ଦାର୍ଶନିକ ବା ବିନୋବା ପରି ପରିବ୍ରାଜକ ଏପରି କଥା କହିବା ନୂଆ । ମାତ୍ର ଦେଶର ନେତା ଯେ କହୁଛନ୍ତି ସବୁ ଦେଶ ନିଜ ନିଜ ସ୍ୱାଧୀନତାରୁ କିଛି କିଛି ତ୍ୟାଗ କଲେ ବିଶ୍ୱଶାନ୍ତି ହେବ, ଏହା ଗୋଟିଏ ବଡ଼ କଥା । ପୁଣି ଜଣେ ଦାର୍ଶନିକଙ୍କୁ ନେଇ ଯେ ରାଷ୍ଟ୍ରପତିର ଆସନରେ ବସା ହୋଇଛି, ଏହା ବି ଏକ ଆଶ୍ଚର୍ଯ୍ୟ କଥା । ସମଗ୍ର ପୃଥିବୀର ବଡ଼ ବଡ଼ ନେତାଙ୍କ ମଧ୍ୟରେ ଏପରି ଜଣେ ସୁଦ୍ଧା ଦାର୍ଶନିକ ନାହାନ୍ତି ଯେ କି ରାଧାକୃଷ୍ଣନ୍‌ଙ୍କ ସମକକ୍ଷ ହୋଇପାରିବେ । ଭାରତ ପାଇଁ ଏହା ଏକ ଗୌରବର ବିଷୟ ଯେ ସେ ଜଣେ ଦାର୍ଶନିକଙ୍କୁ ଏତେ ବଡ଼ ପଦ ଦେଇଛି । ସେ ଯେ ଏ କଥା କହିଲେ ତହିଁରୁ ବୁଝାଯାଉଛି "ଜୟଜଗତ୍" ପାଇଁ ପୃଥିବୀର ଜ୍ଞାନୀମାନେ ମନେ ମନେ ପ୍ରସ୍ତୁତ ହେଉଛନ୍ତି ।

ପୃଥିବୀ ପାଖେଇ ଆସୁଛି । ପୃଥିବୀର କେଉଁ କୋଣରେ କିଛି ଘଟିଗଲେ ସାରା ପୃଥିବୀର ନଜର ତା ଉପରେ ପଡ଼ୁଛି । ଭିଏତନାମରେ ବୌଦ୍ଧମାନଙ୍କ ଉପରେ ଯେ ଅତ୍ୟାଚାର ହେଲା, ସମଗ୍ର ପୃଥିବୀ ଉପରେ ତାର ପ୍ରଭାବ ପଡ଼ିଲା । କେନେଡ଼ିଙ୍କ ହତ୍ୟା ସମଗ୍ର ପୃଥିବୀକୁ ବ୍ୟଥିତ କଲା । ଧରନ୍ତୁ ପଚାଶ ବର୍ଷ ପୂର୍ବେ ଯଦି ଏ କେନେଡ଼ି ହତ୍ୟାକାଣ୍ଡ ହୋଇଥାନ୍ତା ତେବେ ସେ ଖବର ସମଗ୍ର ପୃଥିବୀରେ ବ୍ୟାପିବାକୁ ପାଞ୍ଚ ଛଅବର୍ଷ ଲାଗିଯାଇଥାନ୍ତା । କିନ୍ତୁ ବିଜ୍ଞାନ ହେତୁ କେତେ ମିନିଟ ମଧ୍ୟରେ ଯେ କୌଣସି ଖବର

ସାରା ପୃଥିବୀରେ ପହଞ୍ଚି ପାରନ୍ତି । ମୋତେ ସାଲେଭ୍ଠାରୁ ନୂଆପଡ଼ା ଗୁଳିକର ଆସିବାକୁ ଯେତେ ସମୟ ଲାଗିଲା, ଆଜକାଲି ଆମେରିକାରୁ ଇଂଲଣ୍ଡ ଯିବାକୁ ସେତିକି ସମୟ ଲାଗୁଛି । ମୁଁ ଖବର କାଗଜ ପଢ଼ି ଆଶ୍ଚର୍ଯ୍ୟାନ୍ୱିତ ହେଲି ଯେ ଏ କଳାହାଣ୍ଡିରେ ଦଶମାଇଲ ଗୁଳିକର ଆସୁ ଆସୁ ଏ ଲୋକ ଆମେରିକାରୁ ଯାଇ ଲଣ୍ଡନରେ ପହଞ୍ଚି ଗଲା ? ମୁଁ ପୁଣି ଭାବିଲି ଏ ଆମେରିକାର ଲଣ୍ଡନ ନା ଇଂଲଣ୍ଡର ଲଣ୍ଡନ ? ପୁଣି ଦେଖିଲି ତାହା ଇଂଲଣ୍ଡର ଲଣ୍ଡନ । ଏ ପୃଥିବୀ କେତେ ପାଖେଇ ଆସିଲାଣି !!

ଗାଁ ବିଦେଶର ଗୋଟିଏ କ୍ଷୁଦ୍ର ନମୁନା ହେବ—

ଏପରି ସ୍ଥଳେ ବିଷ୍ଣୁକୁ ସେହି ପରିମାଣରେ ପ୍ରସାରିତ କରିବାକୁ ହେବ । ଅର୍ଥାତ୍ ଭାରତର ମାନଚିତ୍ରର ସ୍କେଲ ବଢ଼ିବା ଦରକାର । ତାହା ସାଙ୍ଗେ ସାଙ୍ଗେ ଘରର ଯେଉଁ ସ୍କେଲ ସେ ମାନଚିତ୍ରରେ ଥିଲା ତାକୁ ମଧ୍ୟ ବଢ଼ାଇବାକୁ ହେବ । ଭାରତର ମାନଚିତ୍ରଟାକୁ ବଡ଼ କରିଦେଇ ଗାଁର ସ୍କେଲ ପୂର୍ବପରି ଛୋଟ ରଖି ହେବନାହିଁ । ଭାରତର ମାନଚିତ୍ର ଯେତିକି ଆକାରରେ ବଡ଼ ହେବ ଗାଁର ମାପ ସେହି ଅନୁପାତରେ ବଢ଼ିବ । ବିଷ୍ଣୁର ପରିଧି ଯେତେ ବଢ଼ିବ ଘରର ପରିଧି ସେହି ଅନୁପାତରେ ବଢ଼ିବ । ତେଣେ ବିଶ୍ୱଟା ଯଦି ଆମର ଦେଶ ହେଲା ତେବେ ଏଣେ ଗାଁଟା ହେବ ଆମର ଘର । ଅର୍ଥାତ୍ ଗାଁ ଗୋଟିଏ ପରିବାର ହେବା ଦରକାର । ପ୍ରତି ଗାଁ ଗ୍ରାମଦାନ ହେବା ଦରକାର । ବର୍ତ୍ତମାନ ଜିଲ୍ଲାପରିଷଦ ଏମା କଥା ବୁଝି ପାରିବେଣି । ଏ ଗ୍ରାମଦାନର ଭୂମିକା ଅତି ବିଶାଳ । ସେ ଭୂମିକାକୁ ଆଖି ଆଗରେ ରଖିଲେ ଗ୍ରାମଦାନର ରହସ୍ୟ ବୁଝିପାରିବେ । ଜିଲ୍ଲାପରିଷଦ ଏ କାମକୁ ମୁଣ୍ଡେଇଲେ ବଳେଇବାକୁ ଆଜି ଗ୍ରାମେ ଗ୍ରାମେ ବୁଲିବାକୁ ପଡ଼ିବ ନାହିଁ ।

ଅନେକେ କହୁଛନ୍ତି—ଏ ଉନୋବାର ଲୋଭ ବଢ଼ି ଗଲାଣି । ପାଞ୍ଚ ଛଅ ହଜାର ଗ୍ରାମଦାନ ହେଲଣି । ଏଣିକ ସେଥିରୁ କେତେକେ-ଖଣ୍ଡ ଗାଁକୁ ଆଦର୍ଶ ଗାଁ କରି ଗଢ଼ିବା ଦରକାର । ମୋ ବିଗୃଗରେ ଏହା ଏକ ମୋହଜାଲ । ସମସ୍ତେ ବୁଝିବା ଦରକାର ଯେ ଏହା ଏକ ବିପ୍ଳବାତ୍ମକ ଅାନ୍ଦୋଳନ । ଏହା ଯେତେ ବ୍ୟାପିବ ସେତେ ଏହାର ସୁରକ୍ଷିତ ବଢ଼ିବ । ଗ୍ରାମଦାନୀ ଗାଁକୁ ଏୟାର କଣ୍ଡିସନ୍ କରି ରଖି ହେବ ନାହିଁ । ଗୃହପଟ ଗାଁରେ ଗରମ ପବନ ବହୁଥିବ, ଖଣ୍ଡିଏ ଖଣ୍ଡିଏ ଗାଁ ଶୀତଳ ହୋଇ ରହିବ, ଏହା ଅସମ୍ଭବ । ସେଥିପାଇଁ କେତେଖଣ୍ଡ ଗାଁକୁ ଧରି ବସି ହେବ ନାହିଁ । ଏ ଗ୍ରାମଦାନ ଆନ୍ଦୋଳନ ହେଉଛି ପରିବାର ନିୟନ୍ତ୍ରଣ ଆନ୍ଦୋଳନର ଠିକ୍ ଓଲଟା । ପରିବାରରେ ସନ୍ତାନ ସଂଖ୍ୟା ଯେତେ ଅଧିକ ହୁଅନ୍ତି, ବାପ ମା'ଙ୍କ ଦାୟିତ୍ୱ ସେତେ ବଢ଼େ । ସେଥିପାଇଁ ଅଳ୍ପ ସନ୍ତାନ ଲୋଡ଼ା । କିନ୍ତୁ ଏ ଆନ୍ଦୋଳନରେ ଠିକ୍ ଓଲଟା ଘଟିବ । ଯେତେ ବେଶୀ ସଂଖ୍ୟାରେ ଗ୍ରାମଦାନ ହେବ, ସେତେ ଆପଣଙ୍କର ଦାୟିତ୍ୱ କମିଯିବ, ସରକାରଙ୍କ ମୁଣ୍ଡକୁ ବେଶୀ ଦାୟିତ୍ୱ ଆସିବ । ଅଳ୍ପସଂଖ୍ୟକ ଗ୍ରାମଦାନ ହେଲେ ଆପଣଙ୍କ ଦାୟିତ୍ୱ ବଢ଼ିବ । ତା'ହେଲେ ବିନୋବା କ'ଣ ତା ନିଜର ପରିବାର ଗଢ଼ୁଛି ଯେ ଆପଣମାନେ ତାକୁ ପରିବାର ନିୟନ୍ତ୍ରଣ ଶିଖାଉଛନ୍ତି ? ସେଥିପାଇଁ ଏ ଗ୍ରାମସ୍ୱରାଜ୍ୟ ଗଢ଼ି ଦେଖାଇବା ଦାୟିତ୍ୱ କେବଳ ସର୍ବୋଦୟ କର୍ମୀଙ୍କ ଉପରେ ନାହିଁ । ମୁଞ୍ଜିଏ ଲୋକ ସର୍ବୋଦୟର ସାଧକ, ବାକି ସମସ୍ତେ ସର୍ବନାଶର ସାଧକ— ଏ ଧାରଣା ହିଁ ଭୁଲ । ଏହା ସମସ୍ତଙ୍କର କାମ । ସମସ୍ତେ ସର୍ବୋଦୟର ସାଧକ, ତେଣୁ ଲକ୍ଷ ଲକ୍ଷ ଗାଁ ଗ୍ରାମଦାନ ହେଲେ ଗୋଟାଏ ବଡ଼ କାମ ହେବ ।

ଖାଲି ସୈନ୍ୟଶକ୍ତି ଦ୍ୱାରା ଦେଶରକ୍ଷା ହେବନାହିଁ—

ଅନେକେ ଭାବୁଛନ୍ତି ଭାରତକୁ ଯେ ଚୀନ୍ ଆକ୍ରମଣ କରିଛି ସେଥିପାଇଁ ଆମକୁ ସୈନ୍ୟଶକ୍ତି ବଢ଼ାଇବାକୁ ହେବ ! ସେଥିପାଇଁ ଆଠଶହ କୋଟି ଟଙ୍କାର ଯୋଜନା ହୋଇଛି ଓ ଉତ୍ତର ସୀମାରେ ଚୀନକୁ ଅଟକାଇ ରଖା ହୋଇଛି କିନ୍ତୁ ଯେତେଣେ ଚୀନ୍ ଅଟକି ରହିବ, ଏଣେ ପ୍ରତି ଗାଁ'ରେ ଚୀନ ସୃଷ୍ଟି ହେବ ତ ତାହା ଏକ ସାଂଘାତିକ କଥା ହେବ । ଗାଁରେ ଯଦି କଳି ବିଭେଦ ରହିବ, ମାଲିକ, ମୂଲିଆ, ମହାଜନ ଏକ ଅପର ବିରୁଦ୍ଧରେ ଲାଗିବେ, ତେବେ ପ୍ରତି ଗାଁରେ ରୁଷିୟା, ଚୀନ୍, ଆମେରିକା ପଶିବେ । ସେଥିପାଇଁ ଗ୍ରାମଦାନ ହେଲେ ତାହା ଦେଶରକ୍ଷାକୁ ସାହାଯ୍ୟ କରିବ ।

ପ୍ରତି ଗାଁ ଗ୍ରାମଦାନ ହେବ । ସମସ୍ତେ ମନ ମିଳେଇ କୃଷିବାସ କରିବେ । ଗାଁରେ କି କି ଫସଲ କରାଯିବ ତାହା ସମସ୍ତେ ବସି ସ୍ଥିର କରିବେ, ଗାଁ ପାଇଁ ଆବଶ୍ୟକ ଖାଦ୍ୟଶସ୍ୟ ଗାଁରେ ମହଜୁଦ ରହିବ, ଗ୍ରାମରକ୍ଷା ପାଇଁ ଶାନ୍ତିସେନା ଗଢ଼ା ହେବେ ଓ ଫସଲ ବଢ଼ାଇବା ପାଇଁ ଉଦ୍ୟମ ହେବ, ଗାଁ'ରେ ଗ୍ରାମଶିଳ୍ପ ଚାଲିବ, କୃଷି କାମ ପାଇଁ ବିଜ୍ଞାନର ସାହାଯ୍ୟ ନିଆଯିବ, ପ୍ରତି ଗାଁ ଗୋଟିଏ ଗୋଟିଏ ଗଡ଼ଜାତ ପାଲଟିଯିବ । ଏମାନେ ଗଡ଼ଜାତ ଉଠେଇ ଦେଉଛନ୍ତି, କିନ୍ତୁ ମୁଁ ଗାଁକୁ ଗଡ଼ଜାତ (State) କରିବାକୁ କହୁଛି । କିନ୍ତୁ ଏ ଗଡ଼ଜାତ ଲୋକାଧୀନ ହେବ, ରାଜାଧୀନ ନୁହେଁ । ଏବେ ରାଜାମାନେ ଯେଉଁ ଟେଣ୍ଟ ବାନ୍ଧିଛନ୍ତି ତା ନା ଦେଇଛନ୍ତି ସ୍ୱତନ୍ତ୍ର ଦଳ । କାରଣ ସେମାନେ ବୁଝିଗଲେଣି ଯେ ଏ ଯୁଗ ହେଉଛି ଲୋକ ଯୁଗ । ଯାହାକୁ man of the street କହନ୍ତି, ସେହି ଲୋକଙ୍କୁ ଏ ଯୁଗରେ ସମ୍ମାନ ଦେବାକୁ ହେବ । ସେଥିପାଇଁ

ରାଧାକୃଷ୍ଣନ୍‌ଙ୍କ ଭଳି ମହାତ୍ମାମାନଙ୍କୁ ଭୋଟ ଅଧିକାର ମିଳିବା ସଙ୍ଗେ ସଙ୍ଗେ ଏକୋଇଶ ବର୍ଷ ବୟସର ଯେ କୌଣସି ବାଟଚଲା ନାଗରିକଙ୍କୁ ମଧ୍ୟ ସେ ଅଧିକାର ମିଳିଛି । କାରଣ ଏଟା ଲୋକ ଯୁଗ । ଗାଁ'ରେ ତାହାର ନମୁନା ଦେଖିବାକୁ ମିଳିବ । ଗାଁ ଜମି ଗ୍ରାମସଭା ହାତରେ ରହିବ । ଗାଁ ଗୋଟିଏ ବଡ଼ ପରିବାର ହେବ । ତା'ହେଲେ ଗ୍ରାମଶକ୍ତି ବଢ଼ିବ । ଆଜିକାଲି ସରକାରଙ୍କ ଦେହରେ ଗାଁ'ର ରଙ୍ଗ ନାହିଁ । ଭାରତର ଅଧିକାଂଶ ଜନତା ଗାଁରେ ରହନ୍ତି । ତଥାପି ସରକାର ସହର ରଙ୍ଗରେ ରଙ୍ଗିଆ । ଏହାର କାରଣ ହେଲା ଗ୍ରାମଶକ୍ତି ଗଢ଼ି ଉଠୁ ନାହିଁ । ଏହି ଗ୍ରାମଶକ୍ତି ଗଢ଼ିବାକୁ ଗ୍ରାମଦାନ ଲୋଡ଼ା ।

## ବିଶ୍ୱ ହେବ ଦେଶ ଓ ଗାଁ ହେବ ଘର—

ଏହିରୂପେ ଗୃହ କଳ୍ପନାର ପ୍ରସାର କରି ଗ୍ରାମ ପର୍ଯ୍ୟନ୍ତ ପ୍ରସାରିତ କରିବାକୁ ହେବ । ତେଣେ ରାଷ୍ଟ୍ର କଳ୍ପନାକୁ ବଢ଼େଇ ବିଶ୍ୱ ପର୍ଯ୍ୟନ୍ତ ପ୍ରସାରିତ କରିବାକୁ ହେବ । ଏ ହେଲା ସର୍ବୋଦୟର ଆକ୍ରମଣ । ଏ ଚିମୁଟା ଭିତରେ ବାକି ସମସ୍ତେ ଧରା ପଡ଼ିଯିବେ । ମୋର ଆଶା, କଳାହାଣ୍ଡି ବାସୀ ଏ କାମକୁ ମୁଣ୍ଡେଇବେ । ତା'ହେଲେ ଓଡ଼ିଶା ଯେ ପଛରେ ପଡ଼ିଯାଇଛି, ସେ ଯାଇ ସବାଗ୍ରେ ରହିବ । ଆପଣ ଜାଣନ୍ତି ଯେ ସୈନ୍ୟଦଳ ଗୋଟାଏ ଦିଗକୁ ମୁହାଁଇ ଚାଲିଥିଲାବେଳେ ତାଙ୍କୁ ହଠାତ୍ ବୁଲିପଡ଼ିବାକୁ ଆଦେଶ ଦେଲେ ସୈନ୍ୟ ମୁହଁ ବୁଲେଇ ଦିଅନ୍ତି । ଫଳରେ ସବାପଛରେ ଥିବା ସୈନ୍ୟ ଆଗୁଆ ହୋଇଯାଏ । ସେହିପରି ଓଡ଼ିଶାବାସୀ ମୁହଁ ବୁଲେଇ ଦେଲେ ଆଗୁଆ ହୋଇଯିବେ । ବର୍ତ୍ତମାନ ଏ କଳାହାଣ୍ଡି, କୋରାପୁଟ, ବଲାଙ୍ଗୀର ଭାରତରେ ଅତି ପଛୁଆ ଜିଲ୍ଲା ଓ ଅନୁନ୍ନତ

ଅଞ୍ଚଳ ମଧ୍ୟରେ ଗଣା ହେଉଛନ୍ତି । ଯଦି ଆପଣ ମୁଣ୍ଡ ବୁଲେଇ ଦେବେ ତେବେ ସମସ୍ତଙ୍କ ଆଗକୁ ଚାଲିଯିବେ ।

କଂଗ୍ରେସ ସରକାର ସମାଜବାଦୀ ରାଜ୍ୟ ଚାହୁଁଛି । ବ୍ୟକ୍ତିଙ୍କୁ ଦବେଇ କରି ରଖାଯାଉଥିବା ସମାଜବାଦୀ ରାଜ୍ୟ ତ ସେ ଚାହୁଁନାହିଁ । ଗ୍ରାମଦାନରେ ବ୍ୟକ୍ତି ସ୍ୱାଧୀନ ରହିବ । ସ୍ୱେଚ୍ଛାରେ ପ୍ରେମପୂର୍ବକ ସମର୍ପଣ କରିବ, ତାର ବ୍ୟକ୍ତିଗତ ସ୍ୱାଧୀନତା ବଜାୟ ରହିବ । ଏହିପରି ବହୁସଂଖ୍ୟକ ଗ୍ରାମଦାନ ହେଲେ ବିକେନ୍ଦ୍ରିତ ଗଣତନ୍ତ୍ର ଶାନ୍ତିପୂର୍ଣ୍ଣ ଉପାୟରେ ହାସଲ ହେବ । ଏହି କଥା ତ କଂଗ୍ରେସବାଲା କହୁଛନ୍ତି ସତର ବର୍ଷ ହୋଇଗଲା, ଏହିପରି ସେ କଥା କଥାରେ ରହିଛି, ଗ୍ରାମଦାନଦ୍ୱାରା ହିଁ ତାହା ଅତି ସହଜରେ କାର୍ଯ୍ୟକାରୀ ହୋଇପାରିବ ।

( କଳାହାଣ୍ଡି ଜିଲ୍ଲାପରିଷଦର ସଦସ୍ୟ ତଥା ବ୍ଲକର ଅଧିକାରୀ-ମାନଙ୍କ ସଭାରେ ଦିଆଯାଇଥିବା ଭାଷଣ, ୯।୧୨।୬୩, ନବାପଡ଼ା )

---